# ବୃକୋଦର

(କବିତା ସଂକଳନ)

■ ଲେଖକ : **ଶରତ ଚନ୍ଦ୍ର ପ୍ରଧାନ**, ଯୋବ୍ରା, ମଝିସାହି, କଟକ-୭୫୩ ୦୦୩ ■ ପ୍ରକାଶକ : ଶ୍ରୀ ଦିଲୀପ କୁମାର ବେଉରା, ବିଜୟିନୀ ପବ୍ଲିକେଶନ୍ସ, ଶଙ୍କରପୁର, ଅରୁଣୋଦୟ ମାର୍କେଟ୍, କଟକ - ୭୫୩ ୦୧୨ ■ ପ୍ରଥମ ପ୍ରକାଶ : **ଶ୍ରୀଗୁଣ୍ଡିଚା, ୨୦୦୬** ■ ପ୍ରଚ୍ଛଦ : ସନ୍ତୋଷ ଭିଡ଼ିଓ ଆଣ୍ଡ୍ ଗ୍ରାଫିକ୍ସ, କଟକ ■ ଅକ୍ଷର ସଜ୍ଜା : ପ୍ରଜ୍ଞା ଡ଼ି.ଟି.ପି., କଟକ -୭୫୩ ୦୧୨ ■ ମୁଦ୍ରଣ ଶ୍ୟାମ୍ ପ୍ରିଣ୍ଟସ, ଶିଳ୍ପାଞ୍ଚଳ, ଖପୁରିଆ, କଟକ ■ ମୂଲ୍ୟ : ଟ ୬୫

# BRUKODARA

(A Collection of poems)

■ Writer : **Sarat Ch. Pradhan**, Zobra, Majhisahi Cuttack - 753 003 ■ Publisher Sri Dilip Kumar Beura, **Bijayinee Publications**, Shankarpur, Arunodaya Market, Cuttack - 753012 ■ First Edition **Shri Gundicha, 2006** ■ Type setting : **Prajna D.T.P. Centre**, Cuttack ■ Cover Design : **Santosh Video & Graphics**, Cuttack ■ Printed at : **Shyam Printers**, Ind. Estate, Khapuria, Cuttack-10 ■ Price : **Rs. 65**

**ISBN : 81-89881-00-0**

# 'ବଦୟନ୍ତି ବୃକୋଦର'

ଉପନିଷଦରେ କୁହାଯାଇଛି "ନ ମନୁଷ୍ୟାତ୍ ଶ୍ରେଷ୍ଠତରଂ କିଞ୍ଚିତ୍" ମନୁଷ୍ୟଠାରୁ ଅଧିକ ଶ୍ରେଷ୍ଠ କେହି ନାହିଁ । ମଣିଷର ଜୈତ୍ରାଗାନକୁ ସେଦିନ ବୈଦିକ ଋଷି ସ୍ୱୀକୃତି ଦେଇଥିଲେ । ବାସ୍ତବରେ ଦେଖିବାକୁ ଗଲେ ଋକ୍‌ବେଦର ପୁରୁଷସୂକ୍ତରେ ଯେଉଁ ବର୍ଣ୍ଣନା ରହିଛି ତହିଁରେ ମଣିଷକୁ ଅମିତ ଶକ୍ତିର ଉତ୍ସରୂପେ ପରିକଳ୍ପନା କରାଯାଇଛି । ସମସ୍ତ ଶକ୍ତି ଓ ଭାବାବେଗର କଳ୍ପିତ ରୂପ ହୁଏତ ମଣିଷ । ଏହି ମଣିଷର କଥା ହିଁ ହେଉଛି ସାହିତ୍ୟର କଥା । ଏଣୁ ସ୍ରଷ୍ଟାଏ କାଳେ କାଳେ ମାନବତାର ଜୟଗାନରେ ଶତମୁଖର । ତେବେ ଏଯାବତ୍ ନିତ୍ୟକାଳର ମଣିଷଟିଏ ସମସ୍ତେ ଖୋଜୁଛନ୍ତି କିନ୍ତୁ ତାର ସୁଠାମରୂପ ହୁଏତ ଅଙ୍କିତ ହୋଇ ପାରିନାହିଁ । ବସ୍ତୁତଃ ମଣିଷ ଖୋଜାର ଶେଷ ନାହିଁ ।

ଭାରତୀୟ ପରିକଳ୍ପନାରେ ବ୍ୟାସ ବାଲ୍ମୀକି ନାନାବିଧ ମଣିଷର ରୂପ ଆଙ୍କିଛନ୍ତି କିନ୍ତୁ ଏହି ମଣିଷଙ୍କ ମଧ୍ୟରେ ରକ୍ତ ମାଂସଧାରୀ ମଣିଷର ଅନୁରୂପତା କେବଳ ଭୀମ ଚରିତ୍ରରେ ହିଁ ଅଧିକ ଦୀପ୍ତ ଏକଥା ଯେ କେହି ସାରସ୍ୱତସେବୀ ସ୍ୱୀକାର କରିବେ । ସେହି ପ୍ରେକ୍ଷାପଟ ନେଇ 'ବୃକୋଦର'ର ପରିକଳ୍ପନା । 'ବୃକୋଦର' ଭୀମଙ୍କର ଅନ୍ୟନାମ । 'ବୃକ୍' ଶବ୍ଦର ଅର୍ଥ ହେଟାବାଘ । ବୃକର ଉଦର ପରି ଯାର ଉଦର୍ ସେ ତ ବୃକୋଦର୍ । ବୃକର ଅନ୍ୟ ଏକ ଅର୍ଥ ଜଠରାଗ୍ନି । ଏ ଅର୍ଥରେ ଗ୍ରହଣ କଲେ ଯା'ର ଉଦରରେ ସବୁବେଳେ କ୍ଷୁଧାର ଜ୍ୱାଳା । ସେ ଯାହାହେଉ ମହାଭାରତରେ ଭୀମ ଏକ ଅନନ୍ୟ ଚରିତ୍ର । ଏହି ଚରିତ୍ର ଭିତରେ ବୃକୋଦରର ଅଭିଧାନିକ ଓ ଲାକ୍ଷଣିକ ଅର୍ଥମାନ ସୂଚିତ । ଏଣୁ ଆଧୁନିକ ମଣିଷର ପ୍ରତୀକ ଭାବରେ ବୃକୋଦରର ରୂପାୟନ ।

ସେଦିନ ମଧୁସୂଦନ ରାଓ କହିଥିଲେ "ବୈକୁଣ୍ଠ ସମାନ ଆହା ଅଟେ ସେହି ଘର/ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର" । ଅର୍ଥାତ୍ ସ୍ନେହ ମମତାର ଘର ହିଁ ପ୍ରକୃତ ଘର । ବେଦୋକ୍ତ ମଣିଷ ଥିଲା ସୁନ୍ଦର । ତା' ଚେତନାରେ ଜଗତର ଶ୍ରୀ ଝଲ୍‌ସି ଉଠୁଥିଲା । ସେ ଭୂମି ଭିତରେ ଭୂମାକୁ ହୁଏତ କଳ୍ପୁ ଥିଲା; ଅଥଚ ମଣିଷ ଯେ ଦେବତା ନୁହେଁ ଏକଥା ସେ ବି ହୁଏତ ଅନୁଭବ କରିଥିଲା । ବ୍ୟାସଙ୍କର ଭୀମଟି ଦେବୋପମ ସାରଳାଙ୍କର ଭୀମ ଦେବୋପମ ନ ହୋଇ ରକ୍ତ ମାଂସଧାରୀ ମଣିଷ ମାତ୍ର । ତାର ଶତ ଦୁର୍ବଳତା ସତ୍ତ୍ୱେ ନାନା ସୁଗୁଣରେ ସେ ଚହଟୁଥିଲା । ସେହି ଚରିତ୍ରର ମୁଖ୍ୟ ଆକର୍ଷଣ ଥିଲା ମଣିଷର ମଣିଷ ପ୍ରତି ଦରଦ, ସ୍ନେହ ଓ ଅନୁକମ୍ପା । ମୋର ପରିକଳ୍ପିତ ବୃକୋଦର ସେହିପରି ଏକ ମଣିଷରୂପୀ ଚରିତ୍ର । ସେ କାଳକାଳ ଧରି

ବିବର୍ତ୍ତିତ ମଣିଷର ଏକ ସୁନ୍ଦର ପରିପ୍ରକାଶ । ସେ ଜନ୍ମ, ପ୍ରଜନନ ଓ ମୃତ୍ୟୁ ପରି ପ୍ରତି କ୍ଷେତ୍ରରେ ଏକ ସଂଗ୍ରାମୀସତ୍ତା । ତା' ଭିତରେ ମଣିଷସୁଲଭ ସ୍ଖଳନ, କ୍ଷୁଧା ସବୁକିଛି ଥିଲା ତଥାପି ସେ ଏକ କ୍ଲାସିକ୍ ଚରିତ୍ର । ଏହି କ୍ଲାସିକ୍ ଚରିତ୍ରଟିକୁ ନୂଆ ଭାବରେ ବିଶେଷତଃ ଆଧୁନିକ ମଣିଷର ଏକ ପ୍ରତୀକ ଚରିତ୍ର ଭାବେ ଅଙ୍କନ କରିବାର ପ୍ରଚେଷ୍ଟା ଏ କୃତିରେ କରାଯାଇଛି । ବସ୍ତୁତଃ ବୃକୋଦରର କଥା ହେଉଛି ମଣିଷର କଥା । ଜୀବାଧର୍ମୀ ମଣିଷର ଜୀବନଚର୍ଯ୍ୟା ଓ ଆଧୁନିକ ମଣିଷର ବୁଭୁକ୍ଷା ଭିତରେ ତଥାପି ସେ ଏକ ଅନନ୍ୟ ସତ୍ତା । ସେ ପୃଥିବୀର ସ୍ତନନ୍ଧୟ । ପୃଥିବୀରେ ସ୍ନେହ ମମତା ମାଧମରେ ଧରାସ୍ୱର୍ଗ ସୃଷ୍ଟିର ପ୍ରୟାସୀ । ଏଣୁ ପୃଥିବୀ ପ୍ରତି ତା'ର ମମତାର ଶେଷ ନାହିଁ । ସେ ସ୍ୱର୍ଗକାମୀ ନ ହୋଇ ପୃଥିବୀ ଭିତରେ ଆତଯାତ ହେବାକୁ ଆକାଂକ୍ଷୀ । ଫଳରେ ପ୍ରତ୍ୟେକ ମଣିଷର ଅନ୍ତର୍ନିହିତ ଚେତନାର ଏକ କାବ୍ୟରୂପ ହୁଏତ ହେଉଛି ଏଇ 'ବୃକୋଦର' ।

ଏଥିରେ ପ୍ରତି ମଣିଷର ସ୍ୱରୂପକୁ ରୂପ ଦେବାର ପ୍ରଚେଷ୍ଟା ରହିଛି । ମାଟିର ମାୟା, ମଣିଷର ସହଜ ସୁଲଭ ରୂପ, ତା'ର ଚିତ୍ତ ଚେତନାର ଦେହଳି, ଭୂମା ନୁହେଁ ଭୂମି ଯେ ମଣିଷର ଅଧିକ କାମ୍ୟ, ତାହା ସଂକେତାତ୍ମକ ଭାବରେ ବର୍ଣ୍ଣିତ । ଫଳରେ ଏ କବିତାରେ ମଣିଷ ବନିଛି ବୃକୋଦର । ପୁରାଣ ବର୍ଣ୍ଣିତ ବୃକୋଦର ସାଜିଛି ନିତ୍ୟକାଳର ମଣିଷର ପ୍ରତିନିଧି । ଏଣୁ ବୃକୋଦର ଭିତରେ ଆମେ, ସେମାନେ, ସମସ୍ତେ ରୂପାୟିତ । ଏ କାବ୍ୟକୃତି ଭିତରେ ପାଠକେ ଆପଣାର ଚେହେରା ଦେଖିପାରିବେ ବୋଲି ଆଶା ଓ ବିଶ୍ୱାସ ।

ଏ କୃତିଟିକୁ ପ୍ରକାଶନରେ ଶ୍ରଦ୍ଧେୟ ଦିଲୀପ କୁମାର ବେଉରାଙ୍କ ଆଗ୍ରହକୁ ତାରିଫ୍ କରୁଛି । ତାଙ୍କ ପରି ଧୀମାନ୍ ଯୁବ ପ୍ରକାଶକଙ୍କୁ ଧନ୍ୟବାଦ ଦେବାକୁ ଭାଷା ନାହିଁ । ସାହିତ୍ୟପ୍ରାଣ ଶ୍ରୀମାନ ସୁଧୀର ଚନ୍ଦ୍ର ବେହୁରା ଓ ମୋ ଝିଅ ଜ୍ୟୋତ୍ସ୍ନା ଉଭୟ ମିଶି ପାଣ୍ଡୁଲିପି ପ୍ରସ୍ତୁତି ସହ ପ୍ରୁଫ୍ ସଂଶୋଧନ କରିଛନ୍ତି, ଉଭୟଙ୍କୁ ଶୁଭେଚ୍ଛା ଜଣାଉଛି । ବିଶେଷତଃ ଏ କବିତାମାନ ଝଙ୍କାରରେ ଧାରାବାହିକ ଭାବେ ପ୍ରକାଶ ପାଇଛି ବିଶେଷ ସଂଖ୍ୟାମାନଙ୍କରେ । ଏ ଅବସରରେ ଝଙ୍କାର ସଂପାଦକ ଓ କବିତା ପାଠପରେ ଯେଉଁ ସୁଧୀ ପାଠକବର୍ଗ ମୋତେ ଉତ୍ସାହିତ କରିଛନ୍ତି ସେମାନଙ୍କୁ ମୁଁ କୃତଜ୍ଞତା ସହ ସାଧୁବାଦ ଜଣାଉଛି ।

**ଶରତ ଚନ୍ଦ୍ର ପ୍ରଧାନ**
୨୬.୦୬.୨୦୦୬
ନେତ୍ରୋତ୍ସବ

# ବୃକୋଦର

## (୧)

ଧବଳରୁ ଧବଳତର
ତୁଷାର ଧବଳ
ଏଇ ହିମାଳୟ,
ମୋ ଆଖିରେ
ଆଣିଦିଏ
କିଏଁ ଏତେ ମେଘ !
ନିବୃତ୍ତିର ଉଆସରେ
ପ୍ରବୃତ୍ତିର ସ୍ୱର
କାହିଁକି ଫେଣେଇଉଠେ
କାହିଁକିର
ମିଳେନା ଉତ୍ତର ।
ଚାରିଆଡ଼େ
ଫର୍ଦଫର୍ଦ ମେଘ
ମୋ ଦେହର
ଉପଖଣ୍ଡେ
ଆଷାଢ଼ୀ ଉତ୍ସବ ।
ଦେଖ ସଭାଜନେ
ଚାଲିଚି ମୁଁ
ଅହର୍ନିଶ
ଆତ୍ମ ଦହନରେ
ବହୁଦିନ ପରେ
ନିଜକୁ ମୁଁ
ଆବିଷ୍କାର କରେ ।

ବୁନ୍ଦା ବୁନ୍ଦା
ମୋ ଆଖିର ଲୁହ
ମେଘ ହୋଇ
ମୋତେ ଯଦି
କରନ୍ତି ଅଥୟ । (୨)

ମୁହିଁ ବୃକୋଦର
ଅଭାଗିନୀ
ମା'ଆଟାର
ଦ୍ୱିତୀୟ କୁମରୀ

ପଚାରିବି
ବାରମ୍ବାର
ଦୁନିଆଁକୁ ମୁହିଁ
ଗୁଣ୍ଡାହୁଣ୍ଡା
ମଣିଷ ମୁଁ
ପରିଚୟ
ମୋର ଅବା କାହିଁ ।

ମୋତେ
ଛଡ଼ାଇ ନିଏ
କିଏ ଅନୁକମ୍ପା
ଦୁନିଆଁରେ
ଅରଣା ମୁଁ
ବଞ୍ଚି ରହେ
ଏହି ମୋର
ପରିଚୟ ଏକା ।

ମୁଁ ଅଜବ ଶିଶୁ
ଜନ୍ମ ନିଏ
ଅଳିଆ ଗଦାରେ;
ପାହାଡ଼ ମଥାନ ଅବା
ଗିରି କନ୍ଦରରେ ।

ଜନ୍ମରୁ ସଂଗ୍ରାମୀ ମୁହିଁ
ସଂଗ୍ରାମ ମୋ ନୀତି
ମଣିଷ ପଣିଆଟାକୁ
ଜାହିର କରିବା ପାଇଁ
ବାଘ ସଂଗେ
ଖେଳେ କିତିକିତି ।

ମୁହିଁ ବୃକୋଦର
ଜୀବୀଧର୍ମୀ
ମଣିଷ ମୁଁ
ଏଇ ମୋର
ଯଦି ପରିଚୟ ।
ନିବୃତ୍ତିର ପଥେ
କିଏ ନିଅ ମୋତେ ?

ତୁମେ କ'ଣ
ପ୍ରମାଣିତ
ମଣିଷ ଜୀବନ;
ତୁମେ କ'ଣ
ସେହି ସତ୍ୟ
ଯାହାକୁ ମୁଁ
ସ୍ୱପ୍ନେ ଦେଖେ
ନିତି ରାତିରେ

(୨)

ମେଘ ପରେ ମେଘ
ମେଘର ଉଆସ
କିଏ ଲେଖେ
ନାନା ବର୍ଣ୍ଣେ
ମୋ ଜୀବନ ଭାଷ୍ୟ ।
ମୁହିଁ ଅଭାଜନ
ଗିରିଶିଖେ
ଲୟ ରଖି
ଚାଲିଲେ ବହନ ।
ପାଦ ମୋର ଖସେ
ଅନୁଗାମୀ
ଆତ୍ମୀୟଙ୍କ
ମୁହଁ ସଂଗେ
ଯଦି ମୁହଁ ମିଶେ ।
କେମନ୍ତେ ମୁଁ
ଛାଡ଼ିବିରେ କହ
ଏଇମାଟି
ଏ ପୃଥିବୀ
ଏଇ ମୋର ଗୃହ ।
ଛଳଛଳ
ନୀଳ ଆଖି
ଜଗତ ଜନର;
ମୋ ଆଖିରେ

ମିଶିଥିଲା
ଯେତେ ଆଖି
କାହାରେ ମୁଁ
କରିବିରେ ପର ।
ଆଜିବି ତ
ମନେପଡ଼େ
ସଂଜ ବେଳଟାରେ
ଏତେ ସ୍ମୃତି
ଏତେ ଜହ୍ନ
ଏତେ ହୃଦ
ଏତେ ମନ
କାହିଁ କେଉଁଠାରେ ?
ଏଣୀବୃଣା
ସମୟର
ଭ୍ରୂଭଙ୍ଗୀ ବିକାରେ;
ଆମେ ଖୋଜୁ
ନୂଆ ଭବ
ନୂଆ ନଭ
ଅଛି କେଉଁଠାରେ ?
ଭାଇ ତେଣେ
ମାରନ୍ତି କୁହାଟ
ଆରେ ଭୀମ
କିଆଁ କରୁ ମଠ ?
ଯିବାକୁ ତ
ଅଛି ବହୁଦୂର
ଏ ଭୂମିରୁ
ସେ ଭୂମିରେ
ପହଞ୍ଚିବା
ନୁହେଁ ପିଲାଖେଳ;

ସମୟ ଯେ
ମାରଇ ପହଡ଼
ସହଳ
ପକାଅ ପାଦ
ଲକ୍ଷ୍ୟ ବହୁଦୂର ।

(୩)

ଶୃଙ୍ଗ ପରେ ଶୃଙ୍ଗ
ଶୃଙ୍ଗ ତଦୁପରେ
ନୀଳ ନଭ
ଡାକୁଥାଏ
ତ୍ରିଭଙ୍ଗୀ ଠାଣିରେ ।
ଚାହେଁ ଅହର୍ନିଶ
ସମୟର
ଦହମୁହାଁ ବେଶ
କେଉଁଠୁ ଆରମ୍ଭ
କେଉଁଠି ବା ଶେଷ ।

ବାରମ୍ବାର
ଜନ୍ମନିଏ
ଧରାର ମଣିଷ
ଦେହେ ଭୋକ
ମୁହଁ ସାରା ହସି ।
ହୁଏତ ମୁଁ
ଭୀମସେନ
କାଳୁ କଯଲାନ୍ତର
ଶାଳିସଂବିହୀନ
କେଉଁ ବିନ୍ଧୁବ୍ରସାଗର ।

ଅଥବା ମୁଁ
ଜଳାବର୍ତ୍ତେ
ଆବର୍ତ୍ତିତ
ଛୋଟ ଦ୍ୱୀପଟିଏ

ନେତ୍ର କୋଣେ
ଟଳମଳ
କେଇ ବୁନ୍ଦା ଜଳ ।
ରଖିଯାଏ
ତୁମରି ପାଖରେ;
ପତ୍ନୀ ମୋର
ପ୍ରିୟା ମୋର
ଥିଲ ତୁମେ
ଶେଷ ଆଶ୍ରା
ଏ ଭବ ଶୟନେ ।
କହି ପୁଣି
ଚାହୁଁଥିଲି
ଦ୍ରୌପଦୀ ମୁହଁକୁ
ଏଣୀ ଯେତେ
ଗୁଣୁଥିଲେ
ଯା'ର ଚାହାଣିକୁ ।
ସବୁ ଏବେ ଶେଷ
ସମଦୁଃଖୀ
ଯାତ୍ରୀ ପାଇଁ
କାହିଁ ବା ମୁହାଁସ !!
କହି ଯେବେ
କରୁଥିଲି
ଆଖି ଛଳଛଳ;
ପ୍ରବୃତ୍ତିର
ଜତୁଘରେ
ନିବୃତ୍ତିର
ଚିତ୍ର ଘୋଡ଼ା
କିଏ ଆଙ୍କେ
କାହିଁ ଅବା
ସେହି ଚିତ୍ରକର ?

(୪)

ଆକାଶୁ ଆକାଶ
କାହାର ଏ ହସ;
ମୋ ସ୍ମୃତିର
ନୀଳ ମେଘେ
କିଏ ସେହି
ମେଘାଭ ମଣିଷ ।

କହୁଥିଲା
ମୁହିଁ ନାରୀ
ମୁହିଁ ତ ଜନନୀ
ସୃଜନର
ମୂଳମନ୍ତ୍ର
ମୁହିଁ ଆଦି ଭୂମି ।

ନାହିଁ ଥଳକୂଳ
ବୃକୋଦରୀ
ଆଖି କୋଣେ
କିଏ ଲିହେ
ଅଲିଭା କଜଳ ।

ତାହାରେ ମୁଁ ଝୁରେ
ସଂଜ ସକାଳରେ
ଲେଉଟାଣି
ଛାଇ ଯେତେ
ବୋଲ୍ ଡାକି
ଓଡ଼ିଶୀ ନାଚିଲେ ।

ତା'ରି ମୁହଁ ଦିଶେ
ବୋଉ ମୋର ଆସେ
ଗିରି ମଥାଣିରେ,
ସମୟ ବି
କୁଆଁ କୁଆଁ ରାବେ
ବେଳ ଅବେଳରେ ।
ନିରୀହ ସେ ଆଖି
ପାରିଥିଲା
ଭୂମିତଳେ
ଭୂମାଟାକୁ ଦେଖି ।
ସଫେଦ ପଣତ ପରି
କାର୍ତ୍ତିକ ଆକାଶ
ବୋଉ ମୁହଁ ପରି ଜହ୍ନ
ଏକାନ୍ତ ବିଷଣ୍ଣ ।
କହୁଥିଲା
ଜହ୍ନବେଳର କଥା
ଧାରେ ଲୁହେ
ଧାରେ ହସେ
ଅସୁମାରୀ ଗାଥା ।
କହିଯାଏ
କିଏ ଧାତିକାରେ
ଭୟ ଆଉ
ଆପଦଙ୍କ
ଗୋହିରୀ ଦାଣ୍ଡରେ ।
ହଠାତ୍
ଝପଟି ଗଲେ
ମହାବଳ ବାଘ
ମୃତ୍ୟୁର ହେଣ୍ଟାଳ
ଅବା
ଜୀବନରେ
ମାଘେଇ ପଉଷ

ବୋଉ ଚକ୍ଷେ
ଝରିପଡ଼େ
ବୁନ୍ଦାବୁନ୍ଦା ଜଳ
ମାତୃସ୍ନେହ
ପ୍ରତ୍ୟାଶୀ ମୁଁ
ଅବୋଧ କୁମର ।

ପାଦ ବାଜି
ଶତ ଶୃଙ୍ଗ
ପାହାଡ଼ଟା
ହୋଇଯାଏ
ଯଦି ଶତଫାଳ
କହ ଭଲା
ଜଗତରେ
କିଏ ନୁହେଁ
ମମତା-ପାଗଳ ।

ସବୁଠି ମୁଁ
ସେହି ବୃକୋଦର
ଖୋଜୁଥାଏ
ଜନମ ଓ
ମରଣର
ନୂଆ ଚଟିଘର ।

ତେଣୁ ମୁହିଁ
ଜନ୍ମ ନିଏ
ଜନନୀ ଜଠରେ
ନିୟତ
ଲେଉଟି ଚାହେଁ
ମଣିଷଟେ
ଯଦି କେବେ
ଆସେ ମୋ ପଛରେ ।



(୪)

ସ୍ମୃତିରେ ବିସ୍ମୃତି
ଆଉ
ବିସ୍ମୃତିରେ ସ୍ମୃତି ।
ମୋ ପୃଥ୍ୱୀରେ
ଘୋଟିଆସେ
ଯଦି ଅମାରାତି ।
ମୁଁ ଖୋଜୁଚି
ମଣିଷର ମେଳ
ଟିକେ ସ୍ନେହ
ଟିକେ ସ୍ପର୍ଶ
ଟିକିଏ ଆଦର ।
ବିଷଲଡୁ
ଦେଲେ ମୁହିଁ
ସାପ ସଂଗେ ଖେଳେ
ବିଷ ବି
ଅମୃତ ହୁଏ
ନାଗବାଳା ମେଳେ ।
ମୁଁ ଅମୃତ କାମୀ
ବାଟହୁଡ଼ା
ମଣିଷ ମୁଁ
ଭୁଲିଯାଏ
ରାଗରୋଷ
ମୁଁ ଅନ୍ତର୍ଯାମୀ ।

ମୁହିଁ ଖେଳ ପ୍ରିୟ
ଜୀବନକୁ
ମଣେ ନିତି
ମହୋତ୍ସବ ମୟ ।

ଜୀବନ ବି
ଯଦି ଏକ ଖେଳ
ମୃତ୍ୟୁତୀର୍ଥେ
ଖୋଜେ ମୁହିଁ
ନୂତନ ସକାଳ ।

ମୁଁ ଜୀବନବାଦୀ
ସବୁଠି
ଜୀବନ ଦେଖେ;
ଜୀବନର
ନାମାବଳୀ
ଦେହ ସାରା ଲେଖେ ।

ଦୁଃଖ ସଂଗେ
ବସିପାରେ ମିତ
ସୁଖର ଉଆସେ
ପୁଣି
ଗାଇପାରେ ଗୀତ ।

ମୁହିଁ ଭୀମକର୍ମା
ସଂଗ୍ରାମୀ
ମଣିଷ ପାଇଁ
ରଖିଯାଏ
ଏକରାର୍ ନାମା ।

ଆଜି ଏଇ
ହିମାଚଳ ମୂଳେ
ଦୀପାଲୋକ ତଳେ
ମଣିଷର

ଅସୁମାରୀ ପଚୁଆର
ସଂସ୍କୃତିର
ନିତ୍ୟନବ ଅଭିସାର
ଦେଖୁକିଂ
ଶୋଷଥର ପାଇଁ
ବରଛୁଢ଼ା
ବେନି ନେତ୍ର ଡୋଳେ
ସଂଜ ବେଳଟାରେ ।



(୬)

ସଂଜେଇ ଆକାଶ
ମୁହଁ ସାରା
ତାରାଙ୍କର
ଦରଫୁଟା ହସ ।

ଭାବୁଥିଲି
ପିଲାଦିନ କଥା
ଅଶ୍ରୁ ଯେତେ
ହୋଇଯାଏ
ଗୋଟେ ଗୋଟେ ଗାଥା ।

ସାଙ୍ଗମେଳ
ଡୁ ଡୁ ଖେଳ
ମନେ ସବୁ ପଡ଼େ;
ମିଛି ମିଛି
ମାଲ ଯୁଦ୍ଧେ
ଭୂଇଁରେ ମୁଁ ଗଡ଼େ ।

ମୋ ପିଠିରେ ବସି
କିଏ ଜଣେ
ମାରଇ କୁହାଟ,
ଏଇ ତୋର
ଛୁଟିଲାରେ ଘଟ ।

ଆରେ ଭୀମା
କାହିଁ ତୋର ମୁକ୍ତି
ରାଣ୍ଡୀ ପୁଅ

ଅନନ୍ତାଏ
କାଳେ କାଳେ
ଭୋଗନ୍ତି ଏମିତି ।
ଶୁଣି ମୁହିଁ
ହସିଦିଏ ଥରେ
ଶତଶୃଙ୍ଗ
ନାମ ଧରି
ଡାକଟାଏ ମାରେ ।
ଦେହେ ମୋର
ଖେଳିଯାଏ
ଶତ ସିଂହ ବଳ;
ସବାର ବି
ଘୋଡ଼ା ବନେ
ଜମେ ମଜା ଖେଳ ।
ଏଇତ ଜୀବନ;
ଖୋଜିବାରେ
ଆପଣାରେ
ବରେ ମୁଁ କଷଣ ।
ଆତ୍ମଭୋଳା
ମଣିଷକୁ
ସବୁତ ସୁନ୍ଦର,
ହସ ଳାନ୍ଦ
ଜଗତଟା
କିଆଁ ଏତେ
ଲଗାଏ ହୁନ୍ଦର ।



(୭)

ସୁନା ନାକୀ
ରୂପା ଆଖି
ଅତୃପ୍ତ ସକାଳ
ଦରୋଟି
ହସରେ ଫିଙ୍ଗେ
ଅଗଣିତ ଫୁଲ ।
କିଆବାଡ଼େ
କାନ୍ଥଦାଢ଼େ
ମାରେ ପଇଁତରା
ଝଲମଲ ଖରା ।
ଲଘୁପକ୍ଷ
ପ୍ରଜାପତି ପରି
ଉଠେ, ବସେ
ଗାଆଁ ଗୋଟା ସାରା ।
ବୋଉ ମୋର
ଚାହିଁ ରହେ
ଆମରି ମୁହଁକୁ,
ସମର୍ଥ୍ୟ
ବାଘନାଚ
ଦେଖି ଯିଏ
କାନ୍ଦୁଥାଏ
ଆପଣା ଛାଆଁକୁ ।

ଭାଇଙ୍କୁ ସେ
ପୁଚ୍ଛୁଥାଏ
ଆକାଶଠୁ
ବଡ଼ କିଏ ?
ପୃଥିବୀଠୁ
କିଏ ଅବା ଭାରୀ ।
ଅମଣିଆଁ
ମନେ ମୋର
ବୋଉ ମୁହଁ
ଦିଶୁଥିଲା
ପୃଥିବୀଟା ପରି ।
ବାପା ମୋର
ହେଲେ ଯଦି
ଗୋଟାଏ ଆକାଶ ।
ଅତୃପ୍ତିର
ମେଘ ଖଣ୍ଡେ
କିଏ ଲେଖେ
ସମୟର
ଅଜଣା କୋଣରେ
ଘନକୃଷ୍ଣ ହସ ।
ଜୀବନର
ଯେତେ ଅଘଟଣ
ଶୈଶବର
ଆକୁଳ କ୍ରନ୍ଦନ ।
ମିଶି ଯଦି
ହୋଇଯାଏ
ଏକ ମହାଗାଥା
ବ୍ୟଥା ଆଉ
ବେଦନାର
ଯେତେକ ସଂହିତା ।

ତାହାରେ ମୁଁ
ପାରେ ନାହିଁ ଭୁଲି
ଘୁରୁଥାଏ
ପୃଥ୍ୱୀ ଦାଣ୍ଡଟାରେ
ଏକ ପରେ
ଆଉ ଏକ
ଗାଁଉ ଗାଁଉ
କାଉଙ୍କର
ଅବୁଝା ଡାକରେ ।
ଅଲକ୍ଷିତେ
କିଏ ମୋତେ
କହୁଥାଏ
ଏଇତ ଜୀବନ;
ବଞ୍ଚିବାର
ଅନ୍ୟନାମ
ହୁଏତ କଷଣ ।
ସେହିଦିନୁ
ମୁହିଁ ଗୁଣ୍ଡା ହୁଣ୍ଡା
ସେହିଦିନୁ
ମୁହିଁ ପରଚଣ୍ଡା ।
ପ୍ରେମ ପାଇଁ
ସ୍ନେହ ପାଇଁ
ଘୂରିବୁଲେ
ଦିନ ରାତି
ଖୋଜେ, ଲୋଡ଼େ
ଯେତେ ଗାଆଁ ଗଣ୍ଡା,
କିଏ କହେ
ଗୋଟାପଣେ
ଏଇ ଭୂମିଖଣ୍ଡେ

କୁଆଡ଼େ ମୁଁ
ଏକ ସୁନାମୁଣ୍ଡା ।

ଦୁନିଆଁର
ବିଚିତ୍ର ଭିଆଣ
ଘୃଣା ବି ତ
ହୋଇଯାଏ
ପ୍ରଶଂସାର
ବିବର୍ତ୍ତିତ
ଆଉ ଏକ ନାମ ।



(୮)

କେ ଯିବ ପରତେ
ଶତସିଂହ
ପରାକ୍ରମୀ
ମଣିଷଟେ
ଧରାଦିଏ
ଭୋକଙ୍କର ହାତେ !

ପଛକୁ
ଚାହିଁବା ମନା
ନିଜକୁ ବି
ଖୋଜିବାରେ
ଏତେ କଟକଣା ।

ଦେହେ ମୋର ଭୋକ
ଭୋକର
ମଣିଷ ମୁହିଁ
ଭୋକର ବଣିକ ।

ବେଳୁବେଳ
ଭେଟେ ମୁହିଁ
ଯେତେ ଭୋକିଲାଙ୍କୁ
ଜଗତ ଜନରେ ଦେଖେ
ନିଜ ଛାଇଟାକୁ ।

ଭୋକ ଯଦି
ଜାଳିଦିଏ
ଏ ଜଠରେ ନିଆଁ

ଭୋକର
[illegible]
ଭୋକର ଜିମିଆଁ
ଭୋକ କେବେ
ପାଲଟଇ
କାମନାର ବହ୍ନି
ସ୍ନାୟୁରେ
ସନ୍ନ୍ୟାସୀ ଖୋଜେ
କାହିଁ ତାର
ମୁଗ୍ଧା ନୈରାମଣି ।
ମୁଁ ବି ହୁଏ
ହତବାକ୍
ସମୟ ଡାକରେ,
ବେଲାବାଳୀ
ହିଡିମ୍ବିକୀ
କରିଣୀ ଗତିରେ ।
କିଏ ମୋତେ
କହୁଥାଏ
ଭୋକ ଖାଲି ଭୋକ
ଦେହରେ
ବିଜୁଳି ଏବଂ
ଓଠରେ ମୋ
ଭୋକର ଚମକ ।
ଚାଲିଥାଏ
ଦିନରାତି
ପଟୁଆର
ମହାଭୋକଙ୍କର ।
ପେଟଭୋକୁ
ମନ ଭୋକ

ମହାବଳୀୟାର
ମଧୁବୋଳା
ପୃଥିବୀ ତ
ଭୋକଙ୍କର ଘର ।

କହି ଯେବେ
ଚାହୁଁଥିଲି
ପୁନଶ୍ଚ ପଥକୁ
ଭୋକର
ମଣ୍ଡଳନୃତ୍ୟ
ଯେତେ ଦେଖିବାକୁ ।



(୯)

ପଛକୁ
ଚାହିଁଲେ ଦିଶେ
କେତେ ଆଙ୍କାମାଳ ।
ପଶ୍ଚିମଟା
ଦିଶୁଥାଏ
ସୁନା ଗରଗର ।
ହାଣ୍ଡିତଳେ
ଜଳୁଥାଏ
ଦୁକୁଦୁକୁ ନିଆଁ
ଏ ଶିରାଳ
ଦେହଟାରେ
କିଏ ବା କୁଣିଆଁ ?
ତାହା କ'ଣ
ଅନାକ୍ରାନ୍ତ ଧାରା
ଅବା ଏକ
ସ୍ନେହର ଡାକରା;
ଭିତରର
ମଣିଷକୁ
କରେ ଆତ୍ମହରା ।
ତାହାରେ ମୁଁ ହେଜେ
ଜୀବନର
ରାଜ ଦାଣ୍ଡେ
ନ୍ୟାୟବଳ

ଗୋଟି ଚାଲି
କିଏ ଅବା ଯୁଦ୍ଧେ
କ୍ଳାନ୍ତ ଶ୍ରାନ୍ତ ମୁଁ ଯେ ।

ଚାହୁଁଥାଏ
ଅଲକ୍ଷିତେ
ଅତୀତର
ଏରୁଣ୍ଡୀ ବନ୍ଧକୁ ।

ବର୍ତ୍ତମାନେ
ଭବିଷ୍ୟକୁ
ବାନ୍ଧି ରଖିବାକୁ ।

ସେଦିନର
ନଈକୂଳ
ତୋଟାମାଳ
[illegible] ତଳ ।

ଦୁର୍ଯ୍ୟୋଧନ
ଦୁଃଶାଦିର
ଯେତେକ କଟାଳ ।

ସବୁ ଆଜି
ମନେପଡ଼େ
[illegible]

କୁରୁସଭା
ଛବି ଯେତେ
ମୋ ନୟନେ ନାଚେ ।

ମୁଁ ଯେ ନିର୍ବିକାର
ବୈଶାଖର
ତାତି ପରି
ମୋ ଆତ୍ମାର
ଭିତର ବାହାର ।

କାହିଁ ଅନୁକଂପା
ଜଙ୍ଗଲ ତଥାଁର ଦିଶେ
ଲାଞ୍ଜ ଛାଟି
କୁମ୍ଭୀରଟେ
ବୁଲେ ଏକାଏକା ।

ତାହା କ'ଣ
ଜରା !!
ମଣିଷ ଜାତିର ?

ବାରମ୍ବାର
କବଳିତ
କରୁଥିବା
ଏଇ ଦେହଟାର

ସେ କ'ଣ ?
ହଟିଆ ନାଗର ।

ଭାଳିବସେ
ମୁହିଁ ଅନିବାର
ମୋ ପିଠିରେ
ଭାଇବନ୍ଧୁ
ଆତ୍ମୀୟ ସୋଦର
ଜଗତ ଯାକର,

କେମନ୍ତେ
ହୋଇବି ପାରି
ସୀମାହୀନ
ଅଶ୍ରୁ ଭରା ନଈ ।

ପଛକୁ
ଚାହିଁବା ମନା
ଆଗକୁ ତ
ହୁଏ ନାଇ ଯାଇ ।

କାନ୍ଦି କହେ
ଯଦି ନିରନ୍ତର
ପୃଥିବୀଟା
ବେଲୁବେଲ
ଦିଶୁଥାଏ
ଅଧିକ ସୁନ୍ଦର ।



## (୧୦)

ଏ ପୃଥିବୀ
ସେହି ଝଠାଘର
ଯେଉଁଠିକି
ଫେରୁଥିବି
ମୁହିଁ ବାରମ୍ବାର ।

ରାହାବାଳୀ
ଅତୀତଟା
କାନେ କାନେ କହେ
ଅନେକ ଖବର ।

ଅଦୂରରେ
ଦିଶୁଥିଲା
ଶ୍ୱେତନୀରା ଗଙ୍ଗା
ଅବସାଦ
ବିମୋଚନୀ
ମାତୃମୂର୍ତ୍ତି ଅବା ।

ପିଠିରେ
ପକାଇ ବୁଲେ
ଯେତେ ବିପଦକୁ
କୁମ୍ଭୀର ପରାୟେ କିଏ
ଗ୍ରାସିନିଏ
ମନହାତୀଟାକୁ ।

ମୁଁ ତ ଏକଲା
ଏ ଅରମା

ଆକାଶରେ
ଝଲମଲ
କିଯାଁ ଏତେ ତାରା ?
ତାହା କ'ଣ
ସ୍ମୃତି
ଅନନ୍ତ କାଳର ??
ତାହା କ'ଣ
ସେତୁ ?
ମଣିଷକୁ
ମଣିଷରେ
ଯୋଡ଼ି ରଖିବାର ।
ଘୋଟିଆସେ
ଚିତ୍ତେ ମୋର
ରୁଦ୍ର ଅନୁଭବ ।
ମୃତ୍ୟୁ ସାଥେ
ଖୋଜେ ମୁହିଁ
ପ୍ରେମର ସଂଯୋଗ ।
କାହିଁ ଅବା
ସେ ଅଦ୍ଭୁତ ନାରୀ
ମୃତ୍ୟୁ ଏବଂ
ଅମୃତର
ଅଦ୍ୱୈତ ଦିଶାରୀ ।
ଏକ ଚକ୍ଷେ
ହେଜୁଥିଲା
ପ୍ରୀତିର ବଳୟ ।
ଆନ ଚକ୍ଷେ
କହୁଥିଲା
ମୋ ନିରୋଳା
ପ୍ରୀତି ପାଇଁ

ହେଲେ ହେଉ
ପରେ ଭ୍ରାତୃ କ୍ଷୟ ।

ପ୍ରୀତିସ୍ମୃଦା
ଅତିଥିଟି ପାଇଁ
ଖୋଜୁଥିଲି
ସ୍ନେହ ସିକ୍ତ
ଟିକେ ମାତ୍ର ଭୂଇଁ ।

ବନ ବିଥିକାରେ
ଦେଇଥିଲି
ଯେଉଁ ଉପହାର
ଘଟୋତ୍କଚ
ଥିଲା ସେହି
ରକ୍ତର ସ୍ୱାକ୍ଷର ।

ଆଜି ତା'ରେ ଝୁରେ
ହିଡ଼ିମ୍ବିକୀ
ସଉଁାଟାକୁ
ଭେଟିଥିଲି
ଦ୍ରୌପଦୀ ଭିତରେ ।

ସବୁ ତ ନିଃଶେଷ
ମୋ ଅଧରେ
କାହାର ଏ
ନିରୁଦ୍‌ବିଗ୍ନ ହସ ।

ଭାବି ମୁହିଁ
ବସୁଥିଲି
ନଈକୂଳଟାରେ
ରକ୍ତାକ୍ତ
ଗୋଧୂଳିଟାକୁ
ଭେଟୁଥିଲି
ମେଘ ଦର୍ପଣରେ ।

ଛଳଛଳ
ମୋ ଆଖିର
ନୀଳ ପାଖୁଡ଼ାରେ ।
ପଚାରିଚି
କିଏ ନୁହଁ
ସେନେହ କାଙ୍ଗାଳ ।
ପ୍ରୀତି ପାଇଁ
କିଏ ଅବା
ନ ବୁଲିଚି
ପୃଥ୍ୱୀ ସାରା
ହାତେ ଧରି
ଏକ ଭିକ୍ଷାଥାଳ ?



(୧୧)

ଭିକ୍ଷା ଆଉ ଦୀକ୍ଷା
ଦୀକ୍ଷା ପାଇଁ
ଲୋଡ଼ାହୁଏ
ଅନନ୍ତ ଅପେକ୍ଷା ।
ହେ ଈଶ୍ୱର
କର ମୋତେ
ଦୀକ୍ଷାର ନିଳୟ
ଯେଉଁଠି
ଫୁଟଇ ନିତି
ସ୍ନେହ ଆଉ
ମମତାର ଫୁଲ ।
ମୋ ଆଖିରେ
ନାଚୁଥାନ୍ତୁ
ଅଗଣିତ ଜନ ।
ମୋ କାନରେ
ଶୁଭୁଥାଉ
ଦୁଃଖଭୁକ୍
ନିଷ୍ପେଷିତ
ମଣିଷର ସ୍ୱନ ।
ମୁହିଁ ବୃକୋଦର
ଅନ୍ୟାୟ ଓ
ଅନୀତିର
ପ୍ରତିରୋଧୀ
ମୁଁ ମନ୍ଦ୍ରିତ ସ୍ୱର ।

ଯଦିବା
ପୁଛଇ କେହି
କୁମ୍ଭୀରକ କଥା
ଏବଂ
କି ନରକା ଗାଥା ।

ଯଦିବା
ଖୋଜଇ କେହି
ହିଡ଼ିମ୍ବକେ
ବଧିବାରେ
କିଏ ସମରଥା ?

ମୁହିଁ ହସିଦିଏ;
ସ୍ଥିତି ପାଇଁ
ନୀତି ପାଇଁ
ଅଣ୍ଟା ଭିଡ଼ିବାରେ
ମୁଁ ଯେ ସୁଖପାଏ ।

କାନ୍ଧରେ
ବସାଇ ବୁଲେ
ଭାଇ ଓ ମାଆକୁ
ଜଗତ
ଜନରେ ଦେଖେ
ନିଜ ମୁହଁଟାକୁ ।

ସବୁବେଳେ
ମୁହିଁ ହସହସ
ମୋ ପଛରେ
ଆସୁଛନ୍ତି
ଅସଂଖ୍ୟ ମଣିଷ ।-

ଆଜି ଏଇ
ସଂଜ ପହରରେ
ମୋ ହୃଦର
ଶେଷ ସ୍ୱପ୍ନ
ଭାଙ୍ଗିଗଲା ବେଳେ ।

ଭାଇ କିଆଁ ଏତେ
ମାରନ୍ତି କୁହାଟ
ବିଚାରୀ
ଦ୍ରୌପଦୀଟା ତ
ହୁଏ ଛଟପଟ ।

ଯା ଭିତରେ
ରୂପ ନିଏ
ନିଖିଳ ଧରିତ୍ରୀ ।

ଜାୟା ଓ
ଜନନୀଙ୍କର
ସେ ଅଦ୍ୱୟ ମୂର୍ତ୍ତି ।

ଥରେ ମାତ୍ର
ଚାହିଁନିଏ ଡୋଳେ
ଏ ପୃଥ୍ୱୀର
ଏତେ ଋଣ
କିଏ ଭଲା
ଶୁଝିପାରେ
ଗୋଟାଏ ଜନ୍ମରେ ।



(୧୨)

ମନେପଡ଼େ
ପୁଣି କେଉଁ
ଫୁଲର ମହକ
ଆଉ
ପୃଥିବୀର ଡାକ ।

ସୁଗନ୍ଧିକା
ଫୁଲଟିଏ ପାଇଁ,
ଛଳଛଳ
ନୟନରେ
କିଏ ଅବା
ରହିଥାଏ ଚାହିଁ ।

ସେ କନକ ଚମ୍ପା
ଧଇର୍ଯ୍ୟ କମ୍ପା
ପଚାରିଲେ
ନାକଟା ଫୁଲାଏ,
ହସର
ଜୁଆର ଯେତେ
ଆଖି କୋଣେ
ଲୁହ ହୋଇଯାଏ ।

ପାରେନି ମୁଁ ବୁଝି
ଚେତନାର
ନଈ ମୁହାଣରେ
ଅକାତ ପାଣିରେ
ଯୋଡ଼ିଯୋଡ଼ି
ହଂସରାଜି
ଯଦି ଗଲେ ହଜି ।

ପଚାରେ ସେ
ମୋରି ମୁଖ ଚାହିଁ
କାହିଁ ସେହି ଫୁଲ ?
ସ୍ୱର୍ଗର ପାରିଜାତ
ଅବା କେଉଁ
ମର୍ତ୍ତ୍ୟର ମନ୍ଦାର
କେହିବି ତ
ନୁହେଁ ସମତୁଲ ।

ଦେଖୁଚ ତ
ସ୍ୱର୍ଣ୍ଣଦୀରେ
ଭାସିଆସ
ଅଗଣିତ ଫୁଲ;
ଲୋଡ଼ା କିନ୍ତୁ
ମୋର, ସେହି
ସ୍ୱର୍ଣ୍ଣାଭ କେଶର ।

କହି ପୁଣି
ଚାହିଁ ରହେ
ମୋହରି ମୁହଁକୁ
ଅତୃପ୍ତିର
ଆକାଶରେ
ସଂତୃପ୍ତିର

ଇନ୍ଦ୍ରଧନୁ-
ଗୋଟେ ଦେଖିବାକୁ ।

ତା ଫୁଲ ଦୋହଦ
ପୂର୍ତ୍ତି ଅର୍ଥେ
କୁବେରରେ
ମାଗିଥିଲି ଦ୍ୱନ୍ଦ୍ୱ ॥

ସବୁ ଆଜି
ହୁଏ ହେଜି
ମୁହଁ ଅନ୍ଧାରରେ
କରୁଣ ସେ
ଆଖି ଯୋଡ଼ି
ମୁଦି ହୋଇଗଲେ ।

ନୟନ ମୋ
ଲୋତକେ ସଜଳ;
ଲୁହ ବିନା
ଦେବି ମୁଁ ବା
କିବା ଉପହାର !!



(୧୩)

ଧୂଳି ବିଂଚ ଟୋଳି
ଏ ଧୂଳିକୁ
ଦେହେ ବୋଳି
କିଏ କେତେ
ସ୍ୱପ୍ନେ ଦେଖେ
ମଧୁ ଚଇତାଳି
ଶରୀରେ ମୋ
ନିଷ୍ପାପ ଗୋଧୂଳି ।
ଚାହିଁରହେଁ
ଦୂର ଅତୀତକୁ
ଧୂଳି ଘର
ଭାଙ୍ଗିବାର
ଦୁର୍ବାର ନିଶାକୁ ।
ଦେଖି ମାଆ
କହୁଥିଲେ
ଆରେ ଘରଭଙ୍ଗା;
ଧୂଳିର ତୂଳିରେ ସିନା
ଜୀବନଟା ରଙ୍ଗା ।
ସେଇଦିନୁ
ଧୂଳିକୁ ମୁଁ
କରେ ନମସ୍କାର ।
ଧୂଳିର
ମହିମା ଗାନେ

ତନ୍ମୟ ମୋ
ଧୂଳିର ସଂସାର ।

ମନେପଡ଼େ ଏବେ
ଏକଚକ୍ର ନଗ୍ରେ
ଧୂଳିର
ବିଛଣା ପାରି
ଶୋଇଥିଲାବେଳେ ।

ନିସ୍ତବ୍ଧ ପ୍ରହରେ
କିଏ କେତେ
କାନ୍ଦୁଥିଲେ
ଖାଲି କଇଁ କଇଁ
ଦୁର୍ବିନୀତ
ଆଖିରେ ମୋ
ନିଦ ଟିକେ ନାଇଁ ।

ହେଜୁଥିଲି
ହଜିଥିବା
ଅପଭାଗ୍ୟଟାକୁ;
ବାହୁର
ତାକତ କେତେ
ଚାହୁଁଥିଲି
କଳି ରଖିବାକୁ ।

ମଆ ମୋର
ହେଉଥିଲେ
ଲହୁରେ ଲୁହାଣ
ଶୁଣି କେଉଁ
ଭିକ୍ଷାଜୀବୀ
ବ୍ରାହ୍ମଣର
କରୁଣ କ୍ରନ୍ଦନ ।

ପଚାରିଲି
କିଏ ନୁହେଁ
ଭିକ୍ଷାଜୀବୀ
କହିବୁ ତୁ ମାତେ ?
ନୀରବରେ
ଲୁହ ଢାଳି
କିଏ ଅବା
କାନ୍ଦେ ନାହିଁ
ନିଖିଳ ଜଗତେ ?
ଦେବ ଶର୍ମା ଘରେ
କିୟାଁ ଏତେ
କ୍ରନ୍ଦନର ରୋଳ
ଯେମିତିକି
ଅଦିନିଆଁ
ବଇଶାଖୀ ଝଡ଼;
ନିଚିପର ଘରଟାକୁ
କରେ ନାରଖାର ।
ମାଆ କିନ୍ତୁ
ଚାହୁଁଥିଲେ
ମୋହରି ମୁହଁକୁ
ବକାସୁର
ବଳି ଭକ୍ଷ
ପୋଢ ଦୁଇଟାକୁ ।
ସାଥେ ଧରି
ଯିବା ପାଇଁ
ବନ ପଥ ଧାରେ ।
କିଏ ତେଣେ
ଡାକ ମାରେ
"ଆରେ ମାନବାରେ"

ଘନ ଘୋର
ରଡ଼ି ଶୁଭେ
କୁହରୁ କୁହରେ ।
କହୁଥାଏ
'କିଏ ତୁରେ
ଭୋଜ୍ୟ ମୋର
କରୁରେ ଉଚ୍ଛିଷ୍ଟ'
କହି ପୁଣି
ମାରେ ଯେବେ
ବଜ୍ର ମୁଷ୍ଟାଘାତ ।
ମୋ ଅନ୍ତର
ଗର୍ଜିଉଠେ
ସତେ ବା ମୁଁ
ଘାଉଲିଆ ବାଘ;
ମୋ ଭୈରବୀ
ସତ୍ତାଟାର
ବେଲୁବେଳ
ହେଉଥାଏ
ଅଭିଷେକୋତ୍ସବ ।
ମୁଁ ବି ହୁଏ
ଗଳଦ୍‌ଘର୍ମ
ଏକ ଧାତିକାରେ
ବକାସୁରେ
ପଠାଏ ମୁଁ
ଯନ୍ତ୍ରଣା ପୁରେ ।
ମାଆ ଭାଇ
ହୁଏତ ବା
ଚାହିଁଥିଲେ
ମୋହରି ପଥକୁ ।

ଅବାଟରେ
ବାଟ କାଟି
ପହଞ୍ଚିଲୁ
ଯାଇ ଯେଉଁ
କୁମ୍ଭାର ଶାଳକୁ;
ତାହା ବି'ତ
ଧୂଳିର ସଦନ
ଧୂଳିରେ ଗଢ଼ିଲେ ହୁଏ
ମୋ ଜୀବନ ଧନ୍ୟ ।
ବିଶ୍ୱ ପାଇଁ
ନିଃସ୍ୱ ହେବା
ଭିତରେ ମୁଁ
ଖୋଜୁଥାଏ
ମଣିଷ ଧରମ ।



## (୧୪)

ଘୂର୍ଣ୍ଣମାନ
ରାଧାଚକ୍ର
ସାତ ତାଳ ଉଚ୍ଚ
ତଥିଉପରେ
ଖେଳୁଥାଏ
କଣୟର ମାଛ ।
ନିମ୍ନେ ଥୁଆ
ଜଳକୁମ୍ଭ ଗୋଟି
ମୀନ ବିମ୍ବ
ତହିଁ ଦିଶେ ଫୁଟି ।
ସେ ବିମ୍ବରେ
ରଖି ଦୃଷ୍ଟି
ଉର୍ଦ୍ଧ୍ୱେ କରି ମୁଷ୍ଟି;
ଯଦି କେହି
ଶର ସଂଧାନିବ;
ମୀନଟିର
ବାମ ଚକ୍ଷୁ
ଫୁଟାଇ ପାରିବ ।
ସେ ଘେନିବ-
'ଏହି ଯାଜ୍ଞସେନୀ'
କହନ୍ତେ
ସ୍ଫୁରଇ କିଆଁ·
ମୋରି ବାହୁ ବେନି ?

କହି ମୁଁ ବା
ଚାହୁଁଥିଲି
ଭାଇଙ୍କ ମୁହଁକୁ ।
ଅର୍ଜୁନ
ଉଠାଏ ଧନୁ
ଲାଖ ବିନ୍ଧିବାକୁ ।
ତୀର ଓ ତୂଣୀର
ନାରୀ ସିନା
ମାରିପାରେ
ମନଭେଦୀ ଶର ।
ଭଣି ଏହି କଥା
ନିଭୃତରେ
ଭାବୁଥିଲି
ଭାବିନୀରେ
ଲଭିବାରେ
କେ ବା ସମରଥା !!
ଅଚାନକ
ଲାଗିଗଲା
ଘମାଘୋଟ ଗୋଳ
କନ୍ୟାରେ
ଛଡ଼ାଇ ନେବେ
ରାଜନ୍ୟ ସକଳ ।
ଉଠିଲି ମୁଁ
ଗଳଗାଜି
ଶାଳବୃକ୍ଷ ଧରି
ନୃପଗଣ
ପଳାଇଲେ
ପରାଭବି
ହା ହା କାର କରି ।

ଭୀତତ୍ରସ୍ତା
ମୃଗୁଣୀଟି ପରି
ଦ୍ରୌପଦୀ ବି
ଆଶ୍ରିଥିଲେ
କୁମ୍ଭକାର ପୁରୀ ।
ଏହା କ'ଣ
ଦଇବ ଲେଖନ ?
ଏକ ନାରୀ
ଆମେ ପୁଣି
ଭର୍ତ୍ତା ପାଞ୍ଚଜଣ ।
ପ୍ରବୃତ୍ତିରେ
ନିବୃତ୍ତିର
ଅହେତୁକ ରଣ ।
ବିଚିତ୍ର ବିଧାନ
ମାତୃ ଆଜ୍ଞା
ପାଳନର
ଏ ନୁହେଁ କି
କ୍ରୂରାନୁଶାସନ ?



(୧୪)

ସେ କୁମ୍ଭାରଶାଳ
ମାଟିଗଢ଼ା
ପିତୁଳାର
ରମ୍ୟ ଝଠିଘର ।
ମଣି ଯେବେ
ଶୋଇଥିଲୁଁ
ପାଉଁଶ ଗଦାରେ
କାହାର
ନିଃଶ୍ୱାସ ବାଜେ
ଆସି ମୋ ବୁକୁରେ ?
ଲଜ୍ଜାରୁଣ
ମୁହଁ ତାର
ଲୁହ ଢଳଢ଼ଳ ।
ପ୍ରାଚୁର୍ଯ୍ୟର
ଅବସାନେ
ଦାରିଦ୍ର୍ୟର ଖେଳ
ବେଶ୍ ଚମତ୍କାର !!
ସେ ବି ଏକ
ଉଦ୍‌ବେଳିତ
ବିକ୍ଷୁବ୍ଧ ସାଗର;
ଅବା କେଉଁ
ବିଖଣ୍ଡିତ
ଚନ୍ଦ୍ରମା ମଣ୍ଡଳ ।

ଢେଉ ଦେହେ
ହେଉଥିଲା
ଖାଲି ଉବୁଟୁବୁ;
ପଚାରିଲି
ଭାବିନୀ ଲୋ
କିୟାଁ ଏତେ ଭାବୁ ।

ଭୟ ପାଇ
ରହେ ସେ ଅନାଇ
ହୋଇଯାଏ
ସତେଅବା
ପୂର୍ଣ୍ଣଗର୍ଭା
ଜୁଆରିଆ ନଈ ।

ପାରେନି ମୁଁ
ବୁଝି ସେ ରହସ୍ୟ
ପଞ୍ଚମୁଖୀ
ଏକ ନଈ
ପୁଣି ତାର
ପଞ୍ଚଧାର ହସ ।

ଏକି ବିଡ଼ମ୍ବନା
ସମୟ ବି
ଖୋଜି ବୁଲେ
ତାହାରି ଠିକଣା ।

ପଚାରିଲି
କାହିଁ ସେହି ନାରୀ
ଆତ୍ମା ଓ ମନର;
କାହିଁ ସେହି
ମହାସତ୍ତା
ଆଦି ଜନନୀର ।

ଏଣୁ ମୁହିଁ
ବାରମ୍ବାର
ଲେଉଟି ଚାହୁଁଚି
ତୁଷାର ଧବଳ
ହିମାଦ୍ରିରେ
ଶେତାଳିଆ
ମୁହଁଟି ଦିଶୁଚି ।
କହି ପୁଣି
ହେଜୁଥିଲି
ଦୂର ଅତୀତକୁ ।
ମନ ବି
ଫେଣେଇ ଉଠେ
ଡୁହାଇ ଡୁହାଇ
ଛାଏଁ ଆପଣାକୁ ।
କହୁଥିଲି
ମଣିଷକି
ହୋଇଥିବ
ଚିରକାଳ
ମୃତ୍ୟୁର ଅଧୀନ;
ଚିରଂଜୀବୀ
ସତ୍ତାଟାକୁ
କେବେ କି
ଖୋଜିବ ନାଇଁ
ହତଭାଗ୍ୟ
ମନୁର ସନ୍ତାନ ।



(୧୬)

ପୁଣି ଏକ
ରୌଦ୍ର ସ୍ନାତ
ସିକ୍ତ ଦ୍ୱିପ୍ରହର ।
ତୁଷାର
ଝଡ଼ର ଶେଷେ
ମେଘମୁକ୍ତ
ମନ ଏବଂ
ହିମାଦ୍ରି କନ୍ଦର
ଏକାନ୍ତ ସୁନ୍ଦର ।
ଭାବୁଥିଲି
ଇନ୍ଦ୍ରପ୍ରସ୍ଥ କଥା
ଏକ ସ୍ତମ୍ଭେ
ପଞ୍ଚ ହସ୍ତୀ
ବନ୍ଧନର
ସୁଠାମ ବ୍ୟବସ୍ଥା ।
ଅଚାନକ
ଆସି ଦିନେ
ବ୍ୟାସ ତପୋଧନ
କହିଗଲେ
କରିବାକୁ
ରାଜସୂୟ
ଯଜ୍ଞ ଅନୁଷ୍ଠାନଁ ।

ଶୁଣି ଭାଇ
ଚାହୁଁଥାନ୍ତି
ଆମରି ମୁହଁକୁ;
କୃଷ୍ଣ ବି ତ
ନିରେଖନ୍ତି
ମୋ ଆଖିର
ବିଦ୍ୟୁତ୍ ସ୍ଫୁରଣକୁ ।
ନିଜେ ପୁଣି
ହେଉଥାନ୍ତି
ଉଲ୍ଲାସମୟ
ପାର୍ଶ୍ୱେ ପାର୍ଥ
ରଚିଥିଲା
ବିଦ୍ୟୁତ୍ ବଳୟ ।
ଆମେ ତିନିମୂର୍ତ୍ତି
ବାହାରିଲୁ
ହୋଇ ଯେବେ
ଦକ୍ଷିଣ ମୂରତି;
ମୋ ଡାହାଣ ଆଖି
ଡେଇଁ ଉଠେ
କିଆଁ ଏତେ ?
ପଥହୁଡ଼ା
କାଉଟାଏ
ଯଦି ଦିଏ ଡାକି ।
କିଏ ଜଣେ
ଅଲକ୍ଷିତେ
ଥୋଇ ଦେଇ
ଚାଉଳ ମୁଠିଏ;
ବାଟ ଚାହିଁ
ବସିଥାଏ
ବେଳବୁଡ଼ା ଯାଏ ।

କହୁଥାଏ
କାହିଁ ଗଙ୍ଗା ?
କାହିଁ ବା ଯମୁନା ?
ପଞ୍ଚତୀର୍ଥୁ
ଦୁଇତୀର୍ଥ
ଗଭୀରତା
କଳି ବି ହୁଏନା !
ସବୁ ଏବେ
ନାଚିଯାଏ
ଚକ୍ଷୁ ପଲକରେ;
ଗିରିଗୁହେ
ଭେରିନାଦ
ଗଧପାଦ-
ଧରା ମୁହୂର୍ତ୍ତରେ ।
ଅବା ମୃତ
ଶାଲ୍ମଳୀରେ
ଅସମୟେ
ଫୁଲ ଫୁଟିଗଲେ ।
ପଚାରିଲି
କାହାର ଏ
ମୃତ୍ୟୁ ଘଣ୍ଟି
ଅବା
ପ୍ରାଣ ନାଟୀ ?
ମିଳେନା ଉତ୍ତର
ଉତ୍ତରୀଟା
ଦୁଇଖଣ୍ଡ
କରିଯେବେ
ଚାହୁଁଥିଲେ
ମୋତେ ବାରମ୍ବାର ।

ଜରାସନ୍ଧ
ମାଗିଥିଲା
ମୋରେ ମାଲଯୁଦ୍ଧ;
କରି ତା'ରେ
ଦୁଇ ଫାଳ
କଲି ଯେବେ
କିଳିକିଳା ନାଦ ।
ହେଉଥିଲା
ପୁଷ୍ପ ବୃଷ୍ଟି
ଘରେ ଓ ବାହାରେ;
ବଳୀ ବଧ୍ୟ ନୃପଙ୍କର
ଅଧରରେ
ଲକ୍ଷେ ଫୁଲ
ଫୁଟେ କୁତୂହଳେ
ସପ୍ତରଙ୍ଗୀ
ଇନ୍ଦ୍ରଧନୁ
ମେଘାବୃତ
ଆକାଶ ମଣ୍ଡଳେ ।



(୧୭)

ଆଉଦିନେ
ନିଭୃତରେ
ଭାବୁଥିଲି
ଜୀବନଟା କ'ଣ ?
ହସକାନ୍ଦ
ବୃତ୍ତାୟିତ
ଏହା କ'ଣ
ଅତୃପ୍ତ ସପନ !
ଅବା କେଉଁ
ପୁଂଜୀଭୂତ
କାମନାର
ଉଷ୍ଣ ପ୍ରସ୍ରବଣ ।
ଅଲକ୍ଷିତେ
କିଏ ଜଣେ
କହୁଥିଲା
ଚାହାଁ ଆରେ ଚାହାଁ ।
କେମନ୍ତେ
ଭୁଲୁଚ ଭଲା
ଏ ମାଟିର
ମହାସ୍ପର୍ଶ
ପ୍ରୀତିର କିମିୟାଁ ।
ସବୁଠି ତ
ସେହି ପଟୁଆର
ଜନ୍ମ ଆଉ

ମରଣର
ନିତ୍ୟ ଅଭିସାର ।
କାହିଁ ବା
ଅଳସ ଠାଣି
ଟଳମଳ ଧରା
କେଉଁଠି ବା
ଗହଗହ
ଜହ୍ନର ଡାକରା ।
ନଈ ମୁହାଣରେ
ପାରୁନି ମୁଁ ବୁଝି
ସୁଅ ମୁହେଁ
ଦିଗ ହଜା
ମୁଁ ଯେ ଏକ
ନିରୀମାଖି ମାଛି ।
ଚାହିଁରହେ
ନଭ ଦର୍ପଣରେ
ଦରଲିଭା
ତାରା ପରି
ଊର୍ଦ୍ଧ୍ୱବାହୁ
ମୂର୍ତ୍ତିଟି ଦେଖିଲେ;
ଆଖିରେ ତା'
ଉଦାସିଆ ହସ
ସତେ ଅବା
ଅସ୍ତଗାମୀ
ସୂର୍ଯ୍ୟ-ବିଭା
ଦେଖାଉଚି
ବିଲୋଳିତ
ଅନ୍ତିମ ପ୍ରୟାସ ।
ମୋ ଦେହକୁ
ଫିଙ୍ଗି ଦିଏ

ମେଂଚାଏ ଗୋଧୂଳି
ରକ୍ତ ସ୍ନାତ
ଗୋଲାପଟି ପରି
ବୁଲବୁଲ୍
ଚଢ଼େଇରେ
ପାରୁନି ମୁଁ ଭୁଲି ।
ହାତରେ ମୋ
ତାକତ୍ ବା କାହିଁ ?
ଭଂଗାମନେ
ଫୁଙ୍ଗା ଦେହେ
ହୁଏ ହାଇପାଇଁ
ଏବେ ମୁଁ ଯେ
ଅପାଂକ୍ତେୟ ଜନ;
ନିତି ଦେଖେ
ଜୀବନର
ଲେଉଟା ଦାଣ୍ଡରେ
ଅସୁମାରି
ମଣିଷର
ପରାଭବ,
ଅଟ୍ଟହାସ
ଲଲାଟ ଲିଖନ ।
ହେଜେ, ହଜେ ଏବଂ ଭଜେ
ତା'ରି ବାଟ ଚାହିଁ
ଏ ଦେହର
ସତ୍ତାଟାକୁ
ହେ ଦେବତା
କାଢ଼ି ନିଅ
ଅବା
କାହିଁ ପାଇଁ ?



(୧୮)

ହିମାଦ୍ରିରେ ଝଡ଼
ଭାଙ୍ଗିପଡ଼େ
ଏକ ପରେ ଏକ
ସ୍ମୃତିର ପାହାଡ଼ ।
ଦିଶିଯାଏ
ଦୃଶ୍ୟପଟ୍ଟ
କୁରୁସଭା ତଳେ
ଦ୍ରୌପଦୀକୁ
ବିବସନା
କରୁଥିଲାବେଳେ;
ଚାହିଁଥିଲା
ସମଗ୍ର ଦୁନିଆଁ
ମୋ ଆଖିରେ
ଜଳୁଥିଲା
ନିଆଁ ଆଉ ନିଆଁ ।
ମୁଁ ବି ହେଲି
ବହ୍ନିମାନ ସତ୍ତା
ମୋ ଅଧରେ
ଅଚାନକ
ସ୍ଫୁରିଥିଲା
ଆଗ୍ନେୟ କବିତା ।
ନେଇଥିଲି
ନିର୍ମମ ଶପଥ

ସୃଷ୍ଟି ପାଇଁ
କୃଷ୍ଟି ପାଇଁ
ବରିନେବି
ମୁଁ ଅମଡ଼ା ପଥ ।

ଭାଇ ମୋର
ହେଉଥିଲେ
ଆକାଶୁ ଉଦାର
ସାଗରୁ ଅଥଳ ।

ଅସହାୟ
ପଣର ବା
କାହିଁ ପ୍ରତିକାର ?
କାଳେ କାଳେ
ଚାଲିଥାଏ
ଦୁର୍ବଳ ଉପରେ
ସବଳର ଯେତେ ଅତ୍ୟାଚାର ।
ଗଳଦ୍‌ଘର୍ମ
ନିପୀଡ଼ିତ ମଣିଷର
ସହିବା ହିଁ
ଭାଗ୍ୟଲିପି
ବେଶ୍ ଚମତ୍କାର !!

ଏଥିରେ ମୁଁ
ଅଗ୍ନିଶର୍ମା ହୋଇ
ଚାହିଁଥିଲି
ରାଜ ସଭାଟାକୁ;
ଗୁଣୁଥିଲି
ବିଡ଼ମ୍ବିତ
ମଣିଷର
ଭବିଷ୍ୟ ଗୋଟାକୁ ।

ମୋ ଭିତରେ
ଶୁଭୁଥିଲା
କା' ନୀରବ ସ୍ୱର
ବାହୁ ବଳୁ
ଧର୍ମବଳ
ମହା ବଳିୟାର ।

କହୁଥିଲି
ଦ୍ରୌପଦୀର କଥା
କେମନ୍ତେ ପାଇବ ମୁକ୍ତି
ଏଇ ନାରୀ ଜାତି
ଜଗତର
ପରା ସେତ
ଅଦ୍ୱୟ କବିତା ।

ହୋଇପାରେ ଅବା କେବେ
ଅସହାୟ ପାଣ୍ଡବଙ୍କ
ହୃଦୟ ବନିତା;
ହାୟରେ ବିଧାତା ।

ହେଜୁହେଜୁ
ଉଠେ ନିଆଁ
ରାଣୀହଂସ ପୁରେ;
ଜଗତରେ
ଜଳେ ନିଆଁ
ଭିତରେ ବାହାରେ ।

ନିଆଁର
ମଣ୍ଡଳ ନୃତ୍ୟ
ସତ୍ତାରେ ସତ୍ତାରେ ।

ଉତ୍ତୋଳିତ
ଫଣୀଙ୍କର
ଜିହ୍ୱା ପରି

ନିଆଁ ନାଗେ
ପାଞ୍ଚାଳୀର
ଶାଢ଼ି ଓଟରାରେ ।

ଲେଲିହାନ
ଚିତାସମ
ରକ୍ତବର୍ଣ୍ଣ ଶାଢ଼ି
ଦ୍ରୌପଦୀର
ଦେହଟାରୁ
ଯାଉଥିଲା ଉଡ଼ି

ନିଆଁ ଧାସେ
ହତବାକ୍
ମଣିଷ ମୁଁ
ହେଉଥିଲି ଘାରି;

ନୀରବତା
ଦିଏ ଶାନ୍ତି
ଶୃଙ୍ଖଳାର
ବଂଧନରୁ
କିଏ ଅବା ଦେବ ମୁକ୍ତି ?

କୃଷ୍ଣା ମୁହେଁ
ଘୋଟି ଆସେ
ଆର୍ତ୍ତି ପରେ ଆର୍ତ୍ତି
ମହାପଟୁଆରେ
ଘନକୃଷ୍ଣ ରାତି ଆଉ ରାତି
କାହିଁବା ପାହାନ୍ତି ?



(୧୯)

ହଠାତ୍ ଦିନେ
ମନ ମୋର
ଇରମ୍ମଦ ମୟ
ଏକାନ୍ତ ଅଥୟ ।

ଥାକମରା
ସ୍ମୃତିଙ୍କର
ନିଭୃତ ଆଳୟ ।

କଳୁଥିଲି
ବନବାସୀ
ଜୀବନର ଗାଥା
ଅଶ୍ରୁସିକ୍ତ
ଅନୁଭବେ
କୋଟିଏ ବାରତା
ଛାଇଯାଏ
ସାରା ଆକାଶରେ
ଯଦି ଧାତିକାରେ ।

ଅସହାୟ
ମୋ ପୃଥ୍ୱୀଟା
ଲୁଚକାଳି ଖେଳେ
ଛାଇ ଆଲୁଅରେ ।

ମୁଁ ବି ହୁଏ
ନାକେଦମ୍
ଚକ୍ଷୁ ପଲକରେ ।

ଦିଶୁଥାଏ
ବିରାଟ ନଗରୀ
ଜୀବନର
ଶେଷ ସ୍ୱପ୍ନ
ରୂପ ନେଲା ପରି ।

ହୋଇଯାଏ
ଏକ ଲୀଳାମଞ୍ଚ
ଅଜ୍ଞାତ ବାସର
ସେ ଯେ ଅଭୟ କବଚ ।

ଭାଇ ନିଜେ
ବରିନେଲେ
ସଭାସଦ ପଦ
ଅର୍ଜୁନର
ଭାଗ୍ୟେ ଲେଖା
ନପୁଂସକ
ବନିବାର
ଯେତେ ଅପବାଦ ।

ଦ୍ରୁପଦ ନନ୍ଦିନୀ
ରତ ଥିଲେ
କେଶ ସମାର୍ଜନେ
ମହାରାଣୀଙ୍କର;
କାଳ ମୋତେ
କରିଥିଲା
ମୁଖ୍ୟ ସୂପକାର
ରାଜ ମଣୋହିର ।

ଘୁଡାମି ନିକୁଳି
ନେଇଥିଲା
ଅଶ୍ରୁଳେ ଦ୍ୟୁତି.
ସର୍ବଜ୍ଞାତା
ସହଦେବ
ଗୋଧେନୁ ପାଳନେ
ବ୍ୟସ୍ତ ଦିନରାତି ।

ଏଇତ ଜୀବନ
ଜୀଇଁବାର
ଅନ୍ୟନାମ
ଆତ୍ମାନୁଶୀଳନ ।

କହି ଯେବେ
କରୁଥିଲି
ଅଶ୍ରୁ ବିସର୍ଜନ
କିଏ ଜଣେ
କହୁଥିଲା
ଭୁଲିଲ କି ପଥ
କାହିଁ ତୋ ଶପଥ ?



## (୨୦)

ଆଉ ଏକ
ଚଇତର
ହସକୁରୀ ରାତି;
ଛାଇ ନିଦେ
ପ୍ରଶ୍ନ କଲି
ଆପଣାରେ
କାହିଁ ମୋ ଧରିତ୍ରୀ ।

ଚତୁର୍ଦ୍ଦିଗେ
ନୂଆ ବାସ୍ନା
ଦେହ ଓ ମନର;
ଚତୁର୍ଦ୍ଦିଗେ
ନୀଳ କଇଁ
ସ୍ୱପ୍ନିଳ ଆଖିର ।
ପୁଚ୍ଛା କଲି
ତଥାପି ମୁଁ
ନିର୍ବାକ ଭଙ୍ଗୀରେ-
"କିଏ ତୁମେ
ଏ ଅମଡ଼ା ପଥେ
କହିବ କି ମୋତେ ?"

ହସି ଦେଇ
କାନ୍ଦିଉଠେ
ଖାଲି କଇଁ କଇଁ;

କଇଁ ବଣେ
ଏତେ ନିଆଁ
ଜଳେ କାହିଁ ପାଇଁ ।

ଥମଥମ
ମୁହଁ ତାର
ସତେ ଅବା
ଦେବୀ କାଳିକାର;

ଦରଫିଟା
କବରୀରେ
ଝଡ଼ବାହୀ
ମେଘ ଯେତେ
କରିଥିଲେ ଘର !

ଦେଖି ମୁଁ ଛାନିଆଁ
ଆଖିରେ ତା
ଜଙ୍ଗଲର ନିଆଁ;
ପୋଡ଼ିଦିଏ
ମୋ ଦଶାର୍ଣ୍ଣ ଗାଁ ।

ପଚାରିଲି
'ଭାବିନୀରେ
କିଆଁ ଆଜି
ଏ ଭବାନୀ ବେଶ'

ଗୁପତ ନକରି କହ
ପ୍ରିୟ ଦୟିତରେ
ତୁଟୁ ମନୁପ୍ରାସ ।

ଶୁଣି ଏହି ବାଣୀ
ହଠାତ୍ କିବା
ଗର୍ଜିଉଠେ
ଘାଉଲା ବାଘୁଣୀ ।

'ଏ ବିରାଟ ରାଟ
କୀଚକର
ବାହୁବଳେ
ମାରଇ କୁହାଟ
ଏ ନିର୍ଲଜ୍ଜୀ
ପ୍ରାଣଟା ମୋ
କେତେ ଅବା
ହେବ ଛଟପଟ ।
କୀଚକ ତ
କାଳଗ୍ରାସୀ
ହୁତାଶନ
ବିରାଟ ନଗ୍ରର
ମାଗି ବସେ
ନାରୀ-ବଟି
ନାହିଁ ତାର
ବାଛ ଓ ବିଚାର ।'
କହି କଂପେ
ଦ୍ରୁପଦ ଦୁଲଣା
ହୁତାଶନ
ସମ୍ଭବା ମୁଁ,
ବୁଦ୍ଧି ଯେତେ
ହୋଇଲାଣି ବଣା ।
କୁହ ଭଲା
ଦ୍ୱିତୀୟ ଈଶ୍ୱର
ଏ ପାପର
ନାହିଁ କିବା
କିଛି ପ୍ରତିକାର ?



(୨୧)

ଆଖି ଏବଂ ଆଖି
ଯୋଡ଼ା ଯୋଡ଼ା ଆଖି
ରହିଥିଲା ଲାଖି ।
କାହିଁ ସେ ପାଞ୍ଚାଳୀ
ମୋ ମନର
ଲୀଳା ମୂର୍ତ୍ତି
ପ୍ରଣୟ ପିତୁଳି ।
ଯା'ଠାରେ ମୁଁ
ଦେଖିଥିଲି
ମୋ ଅଧୁରା ହସ
ସେ ଯେ ମୋର
ତୀର୍ଥ ଭୂମି
ପ୍ରୀତିର କୈଳାସ ।
ଯେ ପୀଠକୁ
ଦିଏ ଧାଡ଼ି
ଦୁର୍ବୃତ୍ତ କୀଚକ,
ଜାଣେ ନାହିଁ
ସେ ଯେ କେଉଁ
ମହାସତ୍ତା
ପଞ୍ଚନଦ ମୁଖ ।
ନିଶୀଥର
ଅନ୍ତିମ ପ୍ରହରେ
ମିଞ୍ଜି ମିଞ୍ଜି
ତାରାଙ୍କର
ଆଖି ମିଟିକାରେ;

ଦୁଇଯୋଡ଼ା ଆଖି
ଦେଇଥିଲା ସାକ୍ଷୀ
କୈତବରେ
କହିଥିଲା
ମୁଗ୍ଧ କୀଚକକୁ

ଯେବେ ଦେଖେ
ପ୍ରେମର ଗରାଖି
ବାନ୍ଧିଦେବି
ତୁମଠାରେ ମାଗି
ଉଦ୍ୟାନ ଭବନେ
କାମନାର
ଉଦ୍‌ଯାପନା
ମନ୍ତ୍ର ଉଚ୍ଚାରଣେ ।

ରହିବି ଅନାଘ୍ରା
ଏ ଦେହକୁ
ଅର୍ପିଦେବି
ପୁଷ୍ପାଞ୍ଜଳି ରୂପେ
ଖାଲି ତୁମ ପାଇଁ ।

କହି ଯେ ଯେ
ନେଇଥିଲା
ପାହୁଣ୍ଡେ ମଣାଇ
ବୃହଦ୍‌ଭାନୁ
ତାପନାଶୀ
ସୁଗଭୀରା
ଆବର୍ତ୍ତିତା
ନଦୀଟାଏ ହୋଇ ।

ଦେଖୁଥିଲି
କୁତୂହଳେ
କୀଚକର
କ୍ଷୁଧାତୁର
ଦେହର ତାଣ୍ଡବ ।

ଅନ୍ତରେ ମୋ
ଜଳୁଥିଲା
ପ୍ରତିହିଂସା
ପ୍ରୀତିନିଶା
ମିଶ୍ରିତ ଖାଣ୍ଡବ ।

ସବୁ ଆଜି
ହେଜି ହୁଏ
ସଂଜ ବେଳଟାରେ ।

ମୃତ୍ୟୁର
ବିକଟ ନାଚ
ସସାଗରା
ଧରା ଏବଂ
ବିରାଟ ନଗ୍ରରେ ।

ସବୁଠିତ
ମହାକାଳ
ପ୍ରୀତି ଆଉ
ପ୍ରତୀତିର
ଏକ ବିନ୍ଦୁଜଳ
ପଦ୍ମପତ୍ରେ
ହେଲେ ଟଳମଳ ।

ଧରି ରଖି
ଚାହିଁ ରହେ
ସୀମାହୀନ
କେଉଁ ଭବିଷ୍ୟକୁ ।

ମୃତ୍ୟୁହୀନ
ସଂପ୍ରୀତିର
ରାଜଧାନୀଟାକୁ ।

ଚାହିଁ ମୁହିଁ
ଛଟପଟ
ହେଉଥାଏଁ
ଗୋଟାଏ ମଣିଷ ।

ଖୋଜୁଥାଏ
କାହିଁ ମୋର
ଅମୃତ କଳସ ?



(୨୨)

ଭୂତି ବି ତ ଭୀତି
ଭୀତି ହୀନ
ଅନନ୍ତ ସଂପତ୍ତି
ମିଳିଗଲେ ଥରେ;
ଜହ୍ନଟାର
ଏତେ ଛଇ
କିଅାଁ କହ
ଦେହ ଗୋଟାକରେ ।

କହୁଥାଏ
ମନଭରି ଦେଖ
ବୟସର
ଯେତେ ସ୍ୱପ୍ନ
ଦେହର ବହପ
ଭାଙ୍ଗିଗଲାବେଳେ

ଆଖିରେ ମୋ
କିଅାଁ ଏ ଭଉଁରୀ,
ମନରେ ମୋ,
କିଅାଁ ଏ କାଉଁରୀ
ସ୍ପନ୍ଦିତ ମୋ ହିୟା;
କାୟାରେ ମୋ
ଘେରି ବୁଲେ
କାହାର ଏ ଛାୟା ??

ସ୍ଥିତିର
ନା
ଗତିର ??
ପ୍ରୀତିର
ନା
ମୁକ୍ତିର ??
ସମ୍ପୁଟିତ
ଅତୁଟ ଜୀବନ,
ସବୁଠିତ
ବଞ୍ଚିବାର
ଗହ ଗହ ସ୍ୱନ ।
ଧେନୁ ଓ ଧରିତ୍ରୀ
ହରିବାର
ଯେତେ କରାମତି
ସବୁ ଯଦି
ବ୍ୟର୍ଥ ହୁଏ
ଏକା ଝଟିକାରେ;
ଦୁର୍ଯ୍ୟୋଧନ
ଫେରିପଶେ
ହସ୍ତିନା ନଗ୍ରରେ ।
ସୁଯୋଗର
ଯେତେ ଲୀଳାମଞ୍ଚ
ହଠାତ୍ ଯଦି
ହୋଇଯାଏ
ଖାଲି ଅପହଞ୍ଚ;
ସବୁ ମୁହିଁ
ଅଙ୍ଗେ ନିଭାଇଛି
ଧୂସରିତ
ଜୀବନର ଇତିହାସ
ଏବେ ମୁଁ ଖୋଜୁଛି ।

ହିମାଦ୍ରି କନ୍ଦରେ
ପଛକୁ ଚାହିଁବା ମନା
ଭବିଷ୍ୟର
ଯେତେ କଳପନା
ସବୁ ଯଦି
ଶେଷ ହୁଏ
ଚକ୍ଷୁ ପଲକରେ ।

ହେ ଧରିତ୍ରୀ,
ମହାଧାତ୍ରୀ
ତୁହି ମଣିଷର
ଏ ଆଖିର
ସ୍ୱପ୍ନ ଯଦି
ଧୂଳିଆ ଧୂସର ।

କାହିଁ ମୋର ମୁକ୍ତି
ପଚାରେ ମୁଁ
ଏକାନ୍ତରେ
କାହିଁ ସେହି
ପ୍ରାଭାତିକ କ୍ରାନ୍ତି ??



(୨୩)

ଘର ଓ ଘରଣୀ
ଏ ଧରାର
ଅଶେଷ କାହାଣୀ ।

ରଖିଯାଏ
ତୁମରି ପାଇଁକି
ଚାହିଁ ଚାହିଁ
ଫୁଲଙ୍କର
ତୋଫା ଚାହାଣିକି ।

ସତତ ମୁଁ
ଭାବୁଥାଏ
କାହିଁ ସେ ରମଣୀ
ଲକ୍ଷ୍ମୀପାଦ
ଥାପିବାର
ହୃଦୟର ରାଣୀ ।

ରକ୍ତଜବା
ଫୁଲ ଧରି ହାତେ
କହିଥିଲା
ଦିନେ ସେ ଏକାନ୍ତେ ।

ଦେଖୁଚ ତ
ଅଭାଗିନୀ ବେଶ
ମୁକୁଳା ମୋ କେଶ ।

ଲୋଡେ ତାଜା ରକ୍ତ
ମୁଁ ଅଶାନ୍ତ
ମୁଁ ଅତୃପ୍ତ
ମୁଁ ନାରାଚର

ଜାଲିକା ମୁଁ
ଘାଲିକା ମୁଁ
ଜଗତ ଯାକର ।

ଯଦି ଭାଷେ
ଟହଟହ ହସେ
ସଂଜବେଳଟାରେ;

ସମୟର
ହସ୍ତାରଡ଼ି
ନଈ ମୁହାଣରେ ।

ଅଚିରାତ୍
ଅନେକ ଘଟଣା
କରିଦିଏ
ମୋତେ ଜାଟିନଣା ।

ଜାଣେ ମୋର
କହୁଥାଏ
ଚୁପ୍‌ଚାପ୍ କଥା
ଅତୀତର
ଘନଘଟା
ଅସୁମାରି ବାର୍ତ୍ତା ।

କୀଚକର
ମୃତ୍ୟୁ ଏବଂ
ଗୋଧେନୁ ହରଣ,

ପଶାଖେଳେ
ପରାଭବ,
ଦ୍ରୌପଦୀର
କେଶ ଆକର୍ଷଣ
ଏବଂ
ବିବସ୍ତ୍ରୀକରଣ ।

ସବୁ ଏବେ
ନାଚିଯାଏ
ଚକ୍ଷୁ ପଲକରେ ।

ବୃକୋଦରୀ
ମନେ ମୋର
ଝଡ଼ଉଠେ
ଅତୀତର
ସ୍ମୃତି ମନ୍ଥନରେ ।



(୨୪)

ଆକାଶରେ
ମେଘଙ୍କର
ଶୋଭାଯାତ୍ରା ·ହେଲେ
ମୋ ଦେହେ
ଚମକ ଲାଗେ
କିୟାଁ ଏଇ
ସଂଜ ବେଳଟାରେ ।

ଚାହେଁ ମୁଁ ପଛକୁ
ଦେଖିବାକୁ
ମଣିଷର
ରଙ୍ଗ ଅଧରକୁ
ଯୋଡ଼ି ଯୋଡ଼ି
ଗୋଲାପ କଢ଼ିକୁ ।

ଏବେତ ନିଷ୍ପନ୍ଦ
ଜୀବନର ଛନ୍ଦ,
ଭେଟେନି କାହାକୁ ।

ପଛରେ ତ
ସହଦେବ ଭାଷେ-
'ସର୍ବଜ୍ଞାତା
କା' ଛାଡ଼ି
ମୁଁ ଚାଲିଲି
ମହାକାଳ ପାଶେ ।'

କହନ୍ତେ ଖସଇ ତା'ର
ଉଭୟ ଚରଣ
ଭାଇଙ୍କୁ ମୁଁ
ପୁଛା କଲି
'ଏକି ବିଡ଼ମ୍ବନା ?
ଏହା କ'ଣ
କପାଳ ଲିଖନ ?'
ଭାଇ ମୋର
ହେଲେ ନିରୁତ୍ତର
ସ୍ୱର୍ଗକାମୀ
ମଣିଷର
ମର୍ତ୍ତ୍ୟପ୍ରୀତି
ସତେ କ'ଣ
ପବନର ଘର ?
ମୁଁ ଯେ କିନ୍ତୁ
ନିରୁତା ମଣିଷ
ସ୍ନେହ ଶ୍ରଦ୍ଧା
ମମତାରେ
ଗଢ଼ା ମୋର ବିଶ୍ୱ ।
କହି ଭୀମ
କାନ୍ଦୁଥାଏ
ଭାଇଟିର ପାଇଁ;
ପାରିଲିନି
ଜାଳି ହାୟ
ଟିକେ ମାତ୍ର ଜୁଇ ।
ଧିକ୍ ମୋର
ସ୍ୱର୍ଗାତୁର ମନ
ମର୍ତ୍ତ୍ୟ ମୋର
ଲୀଳା ଭୂମି

ଏ ଯେ ମୋର
ନିତ୍ୟ ବୃନ୍ଦାବନ ।
ଲୋଡ଼ା ନାହିଁ
ମୋର ସ୍ୱର୍ଗ ବାସ,
ଚାହେଁନି ମୁଁ
ମୁକ୍ତିର ପ୍ରଭାସ ।
ଦେବତାରେ-
ମାଗେ ପୁଣି
ଦେବ ଯଦି ଦିଅ ମୋତେ
ମଣିଷ ଜନମ ।
ଦୁଃଖ ନଈ-
କୂଳେ ବସି
ସାଧୁଥିବି
ଈପ୍‌ସିତ କରମ ।
କହି ଭୀମ
ହୁଏ କାନ୍ଦ କାନ୍ଦ
ଆକାଶରେ
ଉଠିଥିଲା
ମେଘାବୃତ ଚାନ୍ଦ ।



(୨୫)

ତାରା ଆଉ ତାରା
ଅକାଶରେ
ଅଗଣିତ ତାରା
ଖୋଜୁଥିଲି
ଖଡୁଆ ତାରାକୁ
ହେଜୁଥିଲି
କୁରୁକ୍ଷେତ୍ର
ସମରାଙ୍ଗଣକୁ ।
ରଣରଙ୍ଗେ
ଆସୁଥିଲେ
ବୃଦ୍ଧ ପିତାମହ;
ଆଖିରେ ତ
ଅସହାୟ
ଲୁହ ଆଉ କୋହ ।
ପାରୁଶରେ
ଟଳମଳ
ହେଉଥିଲା
ପାର୍ଥ ଆଖି ପାଣି
ଗୁପ୍ତ ନୀରା
ବୈତରଣୀ .
ସତେ ଅବା
ବହଇ ଉଜାଣି ।
ହେଉଥିଲି ସ୍ତବ୍ଧ
ଧର୍ମକ୍ଷେତ୍ରେ

କୁରୁକ୍ଷେତ୍ରେ
ଏକି ପରମାଦ ।

ସବୁଠିତ
ପରମ୍ପରା
ସବୁଠି ତ
ପୃଥ୍ୱୀର ଡାକରା
ଅଜରା ଅମରା ।

ରାଜଲକ୍ଷ୍ମୀ
ରକ୍ଷା ପାଇଁ
ଭୀଷ୍ମଦେବ
ପାତିଥିଲେ ଛାତି;
ମାଟି ମମତାରେ ବନ୍ଧା
କିଏ ଅବା
ନୁହେଁ ଦିବା ରାତି !!

ଅର୍ଜୁନର
ଅବସାଦ
ବଢୁଥିଲା ଏଣେ
ଦେଖି ରଣେ
କୁଳଜନ ଜ୍ଞାତି ।

ପାରେନି ମୁଁ ବୁଝି
ସତ୍ୟ ପାଇଁ
ଧର୍ମ ପାଇଁ
ମଣିଷ ମୁଁ
କେମନ୍ତେ ବା
ଦେବି ଆଖି ବୁଜି ।

ଭାବି ଯେବେ
ଚାହୁଁଥିଲି
ସବୁରି ମୁହଁକୁ;
ଗୀତା ବାଣୀ
ଭାସିଆସେ
ତୁହାକୁ ତୁହାକୁ;

ଅର୍ଜୁନ
ତଟସ୍ଥ ପୁଣି
ବିସ୍ମୟ ବିହ୍ୱଳ
କୃତାୟ
ଯୁଦ୍ଧଂ ନିଶ୍ଚୟ
ସତେ କ'ଣ
ସଂକଳ୍ପିତ ଫଳ ?

ଏହା ଯଦି
ଏକଇ ସରଣୀ
କିଂପା ଏତେ
ଅଭିନୟ,
କିଂପା ଏତେ
ମହାଭୟ,
ସବୁଠିତ
ଫୁଟି ଦିଶେ
ମନୁଷ୍ୟ କରଣି ।

କହି ଭୀମ
କଳୁଥିଲେ
ଅତୀତର କଥା ।

ସବୁ ଏବେ
ଇତିହାସ
ତଥାପି ମୁଁ
ଜନ୍ମ ନେବି
କାଳେ କାଳେ
ସ୍ମରୁଥିବି
ମଣିଷର ଗାଥା
ମୋ ଜୀବନ
ଏବେ ବି'ତ
ଏକ ଖୋଲା ଖାତା
ଦେଖୁଥାଉ —
ନିଖିଳ ଜନତା ।

(୨୬)

ବରଫରେ
ପଡ଼େ ଯେବେ
ଡାହାଣିଆ ଖରା
ମୋ ଛାତିରେ
ବାଜେ କା'ର
କଅଁଳ ଡ଼ାକରା ।
ଅଝଟିଆ
ମନ ମୋର
ପାରେ ନାହିଁ ବୁଝି
ସମୟର
ନିଟୋଳ ହସରେ
ଏତେ ଚାଲବାଜି ?
ଶୁଭସ୍ୱପ୍ନେ
କଟାମୁଣ୍ଡ
କୁଳୁକୁଳୁ ଆଖି
ଚେତନାର
ଚୌକାଠରେ
ସେ ତ ନିରିମାଖି
ରହି ଦେଲା ସାକ୍ଷୀ ।
ସବୁଠିତ
ଦିଶିଯାଏ
ଛଳନାର ଖେଳ
ସବୁଠି ମୁଁ

ହତବାକ୍
ମଣିଷ ମାତର ।

ହସେ, ବସେ
ରଣ ରସେ
ଶତ୍ରୁକୁ ବିନାଶେ

ରଣମଦେ
ରେ ରେ କାର କରି
ଟହ ଟହ ହସେ ।

ଭୀଷ୍ମକଲେ
ଶରଶଯ୍ୟା
ଯଦି ମୁହାଁସରେ

ଅବୋଧ
ଶିଶୁଟି ପରି
କାନ୍ଦୁଥିଲି
ମୁହିଁ ନିରୋଳାରେ ।

ସହଦେବ
କହୁଥିଲା
ଏଇତ ଜୀବନ
ହରାଇବା
ମିଳିବାର
ଅବା ନନ୍ଦିଗ୍ରାମ ।

ପାରେନି ମୁଁ ବୁଝି
ଜୀବନଟା
ବିତିଯାଏ
ଧର୍ମ ପାଇଁ ଯୁଝି ।

ବିଡ଼ମ୍ବିତ
ମଣିଷ ମୁଁ
ରଣ୍ଡାଭଣ୍ଡା ଲୋକ ।

ମୁଁ ବି ପରା
ସ୍ଥୂଳ ବୁଦ୍ଧି
ଏକାନ୍ତ ଗିବାକ ।
ମୋତେ ନେଇ
ଚାଲିଥାଏ
ନାନା ଜଳପନା
ଦାଦା ବଟି
ନେବା ଆଉ
ଲୁଟପାଟ
କରିବାର
ଯେତେକ ଯୋଜନା ।
ସବୁକୁ ମୁଁ
ପଣ୍ଡ କରେ
ଆଖି ମିଟିକାରେ
ସତତ ମୁଁ
ଜନ୍ମ ନିଏ
ଯୁଗେ ଯୁଗେ
ମଣିଷ ରୂପରେ
ମର୍ତ୍ତ୍ୟ ମଣ୍ଡଳରେ ।
କହି ଯେବେ
ଚାହୁଁଥିଲି
ଏଇ ପୃଥିବୀକୁ
ହେଜୁଥିଲି
ମଣିଷର
ଅନ୍ତଃସତ୍ତାଟାକୁ ।
ଏ ସତ୍ତାକୁ
କିଏ ଦିନେ
କାଢ଼ି ନିଏ
ଈକ୍ଷଣ ନିଁଚାଇ

ରାଜନୀତି
ବାଜ-ନୀତି
ହେଲେ ଦୁଇ ଭାଗ ।
କ୍ଷେପିଯିବେ
ପୃଥିବୀରେ
କହିଥିଲା
ଦିନେ ସହଦେବ ।
ଧଳା ଟୋପି
ଧଳା କୁର୍ତ୍ତା
ଏକାନ୍ତ ଧବଳ,
ସହଦେବ
ବନ୍ଧା ଲୋକ
ଫିଟି ଯେବେ
ନିଏ ଅବତାର ।
ବୃକୋଦର
ନେତ୍ର କୋଣେ
ଲୁହ ଯେତେ
କରିଥିଲେ ଘର ।
ସବୁ ଯଦି
ବରଫରେ
ହେଲେ ରୂପାନ୍ତର ।
କିଏ ଅବା
ରଖେ ସେ ଖବର
ଲହୁ ଓ ଲୁହର ।



(୨୭)

ସେ ଯେ ଏକ
କରୁଣ ସକାଳ
ସପ୍ତାଶ୍ୱର
ରଶ୍ମିହାତେ
ଅରୁଣ ବି
ହୁଏ ଟଳମଳ ।
ସୂର୍ଯ୍ୟଦେବ
ପୁଚ୍ଛା କଲେ
ଏ'କି ବିପତ୍ତି ?
ଅଶ୍ୱିନୀର
ଚକ୍ଷୁ ଲୁହେ
ଭରିଉଠେ
କିୟାଁ ଏଇ କ୍ଷିତି ?
ପଛେ ଭୀମ
ଆସୁଥିଲେ
ଦାରୁଭୂତ
ମୁରାରୀଟି ପରି
ବେଲୁବେଲ
ଚାହୁଁଥିଲେ
ଧୁଣି ଫେରି ଫେରି ।
ଶୋଭନ ମୂରତି
ନକୁଳ ବି
ପାରିଲାନି ବର୍ତ୍ତି
ଏଇ ଧରା ତଳେ
ପଡ଼ିଗଲା
ମହାକାଳ ବଳେ ।

ତା' ପାଟିରେ
ଦେବି ମୁହିଁ
ଦୁଇ ଟୋପା ଜଳ
ଗଙ୍ଗୋଦକ
ପାନ କରି
ଛାଡୁ ଏ ଶରୀର ।
ମରଧର୍ମ
ପାଳନର
ଏହା ହିଁ ତ ବା'ଟ;
ମହାର୍ଘ
କଣିକା ଦାନେ
କଟିଯାଉ
ଯେତେକ ସଂକଟ ।
କହନ୍ତେ,
ଦିଶଇ ତେଣେ
ଅଜଣା ତାରାଟେ
ଦିଗ୍‌ବଳୟ ତଟେ ।
ଯୁଧିଷ୍ଠିର
କହୁଥିଲେ
ଶୁଣ ଆହେ ଭୀମା,
ମୋହମାୟା
ସଂସାରର
ତୁଚ୍ଛାଟାରେ ବାବୁ,
କିଆଁ କରୁ ବୀମା ?
ଶୁଣି ଏଇ ବାଣୀ
ଭୀମ ମନ
ଉଠେ ଗଣେରଣି;
ବାଷ୍ପାକୁଳ କଣ୍ଠେ
କହିବସେ
ନକୁଳ କାହାଣୀ ।

ଛାୟାପରି
କାୟା ସଂଗେ
ଥିଲା ସେ ଜଡ଼ିତ,
କୁନ୍ତ ମୁନେ
ଏ ପୃଥ୍ୱୀ କି
କଲା କରଗତ ।

କେମନ୍ତେ
ଭୁଲିବି କହ
ତାହାରି ମହିମା
ସେ ତ ଆମ
ପ୍ରାଣାଧିକ
ସୋଦର ପ୍ରତିମା ।

କହୁ କହୁ
ଆକାଶରୁ
କରକା ସଂପାତ,
ଅଶ୍ରୁସିକ୍ତ
ଭୀମସେନ
ବସିପଡ଼ି
ଭୂମି ଖଣ୍ଡକରେ
ମୁଣ୍ଡ କୋଡ଼ି
ନୀରବରେ
କପାଳରେ
ମାରୁଥିଲା ହାତ ।

କିଏ ଜଣେ
ଅଲକ୍ଷିତେ
କହୁଥାଏ
ଅଜବ ସେ
ଭୀମର ଚରିତ
ସବୁ ଏଯେ
ମଣିଷର ଗୀତ ।

## (୨୮)

ସେଇଦିନ
ସେଇ ରାତି
ସେଇତ ଭୁବନ ।
ଗାଉଛି ମୁଁ
ଭୀମସେନ
ଜୀବନର ଗାନ ।
ହିମାଦ୍ରି ଶିଖରେ
ନୀଳଚନ୍ଦ୍ର
ତାରା ଆଉ
ଗ୍ରହୁ ଗ୍ରହାନ୍ତରେ;
କାହା ମୁହଁ
ଦିଶୁଥାଏ
ଭିତରେ ବାହାରେ ।
ଏହା କ'ଣ
ଜୀବନର ଭ୍ରାନ୍ତି ?
ଅବା କେଉଁ
ନୂତନ ସଂକ୍ରାନ୍ତି ।
ପାରେନି ମୁଁ କଳି
ସ୍ମୃତି ପରା
ତୋଫାଜଳ୍ପ
ହୃଦୟ ସଞ୍ଚାଳି ।
ସ୍ମୃତି କେବେ
ପାଲଟଇ
ଜୀବନ ସଂହିତା

ସ୍ମୃତି କେବେ
ହୋଇଯାଏ
ଲେଲିହାନ ଚିତା ।
ଗୋଧୂଳି ବେଳରେ
ଜୀର୍ଣ୍ଣ କୂପେ
କନ୍ଦୁକଟି
ପଡ଼ିଗଲା ବେଳେ ।
ଟିକିଟିକି
ଆଖିଙ୍କର
ଜହ୍ନ ଆଲୁଅରେ,
ଯାହାରେ ମୁଁ
ଭେଟିଥିଲି
ରାସ୍ତା ମୋଡ଼ର୍ଣରେ ।
ସବୁ ଏବେ
ଦିଶିଯାଏ
ଭସାମେଘ ପରି,
ସବୁ ଏବେ
ମନେପଡ଼େ
ବାଢ଼ିଥିବା
ମୋ ମନର
ଅଝଟ ଗୁହାରି ।
କହିଥିଲି
ବିକଳରେ
ଶୁଣହେ ବାଟୋଇ
ଜୀର୍ଣ୍ଣ କୂପୁ
କନ୍ଦୁକଟି
ପାରିବ କି ଦେଇ ?
ଏଥୁଅନ୍ତେ
ସେହି ପଥଚାରୀ

ହୋଇଗଲେ
ମହାଧନୁର୍ଦ୍ଧାରୀ,
ଶରମୁନେ
କନ୍ଦୁକରେ
ଆଣିଲେ ଓଟାରି ।
ଏ କଥା
ବାଜିଲା ଯାଇ
ପିତାମହ କାନେ,
ଅସ୍ତ୍ରଗୁରୁ
ପାଲଟିଲେ
ଆଚାର୍ଯ୍ୟ ଆପଣେ ।
ସେ ବି ଦିନେ
ହତ ହେଲେ
ଛଳ ବଚନରେ
''ନରେ ବା ଗୁଞ୍ଜରେ
ଅଶ୍ୱତ୍ଥମା ହତ''
ବାଣୀ ଶ୍ରବଣରେ ।
ସବୁକଥା
ସ୍ମୃତି ସଂପୁଟରେ
ଏବେ ବି ତ
ଜଳଜଳ ଦିଶେ ।
ଦୁଃଶାସନ-
ରକ୍ତସ୍ନାନେ
ଦ୍ରୌପଦୀ ବି
ବେଣୀ ବାନ୍ଧି
ଖୁଲି ଖୁଲି ହସେ ।
ସେନାକୁଳ
ରହିଥିଲେ ତ୍ରାସେ
ରଣୋନ୍ମାଦେ

ମୁଁ ବି ନାଚିଥିଲି
ନରସିଂହ ବେଶେ ।
ରଣରଙ୍କ
ଜୀବନର
ଏଇମିତି
ଅନେକ କାହାଣୀ
ଦୁର୍ଯ୍ୟୋଧନ
ଉରୁଭଙ୍ଗ,
ଧୃତରାଷ୍ଟ୍ର
କୁଳନାଶ
ଆଦି ଯେତେ
ଯୁଦ୍ଧ ବିବରଣୀ ।
ଶୁଣି ଜ୍ୟେଷ୍ଠ ତାତ
କୋଳାଗ୍ରତ
କରିବାକୁ
କପଟରେ
ବଢ଼ାଇଲେ ହାତ ।
ପ୍ରଭୁ ଜଗନ୍ନାଥ
ଜାଣିଥିଲେ
ଜ୍ୟେଷ୍ଠଙ୍କର
ଖଳବୁଦ୍ଧି
କୁଟିଳ ବୃତ୍ତାନ୍ତ ।
ଧାତିକାରେ
ଲୌହଭୀମ ଆଣି
ଅଧମକୁ
ରକ୍ଷା କଲେ
ସେହି ଚକ୍ରପାଣି ।
କେମନ୍ତେ ମୁଁ
ପାଶୋରିବି
ଏ ସକଳ କଥା ।

ମୋ ଭିତରେ
କିଏ ହସେ
କାହିଁ ସେହି
ଲୀଳାଧର
ଜଗତ କରତା ।

ନିତ୍ୟ ନାରାୟଣ
ବୃକୋଦରୀ
ସତ୍ତାଟାର
କାହିଁ ସେହି
ପରମ ଅଞ୍ଜନ;
ଯାରେ ମୁହିଁ
ଚିନ୍ତେ ଅନୁକ୍ଷଣ ।



(୨୯)

ଲୋହିତରୁ
ହରିତାଭ
ସବୁଜୁଧୂସର;
ପୀତ ବି'ତ
ହରିତର
ଏକ ରୂପାନ୍ତର ।
ଭାଳି ବସେ
ସଂଜବେଳଟାରେ
ହିମାଦ୍ରି ଶିଖରେ
ସୂର୍ଯ୍ୟ ଯେବେ
ଅସ୍ତ ହେଉଥିଲେ ।
ପଛକୁ ମୁଁ
ଦେଉଥିଲି ଚାହିଁ,
ସ୍ୱର୍ଣ୍ଣ ବର୍ଣ୍ଣା
ମେଘ ମାଳା
ଗିରିଶିଖ
ଯାଉଥିଲା ଛୁଇଁ ।
ପାର୍ଥ ମୋତେ
ଡାକୁଥିଲା
ରହ ଭାଇ ରହ,
ପାହାଡ଼ ଚଢ଼ାଟା ଏବେ
ଲାଗେ ଦୁର୍ବିସହ ।
ଦେହେ ମୋ
ବାକୁଲି ଉଠେ

ପାରୁନି ମୁଁ ଚାଲି,
ସମୟର ଚୋରାବାଲି
ମୋତେ ଦିଏ
ଭିତରକୁ ପେଲି ।
'ମୁଁ ଏବେ ଅଥର୍ବ
ମୋ ଜୀବନ-
ନାଟକର
ଶେଷ ଦୃଶ୍ୟ;
ଏହା କ'ଣ
ଅନ୍ତିମ ପରବ ?''
କହି ଯେବେ
ହେଉଥିଲା
ଖାଲି ହାଇଁ ପାଇଁ
ଆହା ସାହା
ଟିକେ ବି' ତ
ପାରିଲିନି ଦେଇ ।
ସେ ଯେ ଥିଲା
ମହାସତ୍ତା
ମଣିଷ ଜାତିର;
ଧର୍ମ ପାଇଁ
କର୍ମ ପାଇଁ
ଜୀବନକୁ
ପଣ କରି
ଖୋଜୁଥିଲା
ଗୋଟାଏ ଉତ୍ତର
ଅନେକ ପ୍ରଶ୍ନର ।
ଭୀଷ୍ମମାନେ
ଶରଶଯ୍ୟା କଲେ
ଦ୍ରୋଣ ଯେତେ

ରଚୁଥାନ୍ତି
ଚକ୍ରବ୍ୟୂହ
କାଳୁ କାଳାନ୍ତର,
ମନୁଷ୍ୟତ
ସେହି ଅଭିମନ୍ୟୁ
କାଳେ କାଳେ
ମହାନାଟକର ।

ଶ୍ୱେତକର୍ମା
ଅର୍ଜୁନର ଆଖି
ଦେଖୁଥିଲା
ଅନ୍ତରୀକ୍ଷେ
ଶ୍ୟେନ ସାତୋଟିକି;

ହଠାତ୍
କୁଳାୟ ରଚି
ଘେରୁଥିଲେ
ନିରୀହ ସେ
କପୋତ ପକ୍ଷୀକି ।

ସବୁ କ'ଣ
ଭାଗ୍ୟ ବିଡ଼ମ୍ବନା ?
ଦୁର୍ବଳରେ
ସବଳର
ଅମାପ ଯାତନା ।

[illegible] [illegible] ଯେ
କରିପାରେ
ଜୟଦ୍ରଥ ବଧ ।

ରଥଚକ୍ର
ମାଟିରେ ଧସିଲେ
କର୍ଣ୍ଣ ବି ତ
ବାଡ଼ିପାରେ
ଅନେକ ବିରୁଦ

ଗୋଟି ଗୋଟି
ମନେପଡ଼େ
ଏଇ ମୁହୂର୍ତ୍ତରେ
ବଳିଯ୍ୟାର
କାଳଟାର
ଭ୍ରୁକୁଟି ବିକାରେ ।

ସବୁଠି ତ
କେବଳ ନାଟକ
ଭଙ୍ଗାଗଢ଼ା
ଜୀବନର
କାହିଁ ସେ ନାୟକ ?

ସର୍ବେ ଦିନେ
ଅବଶ୍ୟ ତ
ପାଲଟିବେ ମଣ୍ଡି
ଆଖି ମିଟିକାରେ;

ତଥାପି ମୁଁ
ତା'ରେ ଖୋଜେ
ତାରାରୁ ତାରାରେ ।

କାହିଁ ସେ ଅର୍ଜୁନ
ମଣିଷର ନିତ୍ୟସତ୍ତା
ହୃଦୟ ସ୍ପନ୍ଦନ ।

ଗୁଣି ବସେ,
ଅଶ୍ରୁ ଢାଳେ
ତା ନୀଳ ସ୍ମୃତିରେ

ମନ ବି
ଫେଣେଇ ଉଠେ
ଭାଇଙ୍କର
ନିଟୋଳ ଡାକରେ ।

ଶୁଭୁଥାଏ
ସେହି ଡାକ
ଆସ ଆରେ ଆସ,
ପ୍ରପଞ୍ଚର
ମାୟାକାଟି
ଭୁଲିଯାରେ
ଏ ମର୍ତ୍ତ୍ୟ ପ୍ରବାସ ।

ଦେଖ ଆରେ
ଅନୁଗାମୀ
ଶ୍ୱାନ ମୁଖେ
କି ବିଲୋଳ ହସ ।
ତୁ ପରା ହେବୁରେ ବାବୁ
ଊର୍ଦ୍ଧ୍ୱଗ ମଣିଷ ।



(୩୦)

ଭୂମା ନୁହେଁ ଭୂମି
ମଣିଷ ମୁଁ
ଲୋଡ଼େ ମାତ୍ର
ସାତପାଦ ଜମି ।
କହି ଭୀମ
ସ୍ମରୁଥିଲେ
ସେହି ଅତୀତକୁ ।
ପାଞ୍ଚଖଣ୍ଡି
ପଡ଼ା ପାଇଁ
ଉପୁଜିବା
ଯେତେ ଅନର୍ଥକୁ ।
ସବୁଠି ତ
ଖୋଜୁଥିଲେ
ଭୂମିର ସଂବାଦ ।
ଜନନୀ
ଜନ୍ମଭୂମିଶ୍ଚ
ସ୍ୱର୍ଗାଦପି
ଗରୀୟସୀ
ପରି ଯେତେ
ହୃଦୟ ସନନ୍ଦ ।
ପାଳନରେ
ଗତ ପୁଣି
ଲୁହେ ଗଦଗଦ,
ମନ ତଳେ

ଜାଗେ କିୟାଁ
ମୁକ୍ତିର ଦୋହଦ ।
ପାରେନି ମୁଁ ବୁଝି
ଶିଆଳି ଲଟାରେ
କୃଷ୍ଣଙ୍କ
ନିର୍ମୋହ ହସ
ଯୁଧିଷ୍ଠି
ନିଷେଧାଦେଶ
ଅର୍ଜୁନର ଖେଦ;
ଲହୁ ଲୁହେ
ବଢ଼େ ସିନା
ପ୍ରେମର କୁସୀଦ ।
କଳେ, ଭାଳେ
ଝୁରେ ପୁଣି
ଅନୁଜର ପାଇଁ;
ଗିରିଶିଖେ
ଉଠିବାରେ
ମନ ମୋର
ତିଳେ ବଳୁ ନାହିଁ ।
ଭାଷି ଯେବେ
ହେଉଥିଲି
ତୁଷାର ଝରକୁ,
ଚିକ୍‌ମିକ୍
ତାରାଙ୍କର
ଆଖି ତରାଟକୁ ।
ଚନ୍ଦ୍ରାଲୋକେ
କିଏ ସେହି
ନାରୀ ମୂର୍ତ୍ତି
ଧ୍ୟାନ ଧାରଣାର !!

ମମତା ପୁଅ
ଆଖିରେ
ଚାହେଁ ବାରମ୍ବାର
ଧରିତ୍ରୀ ତ
ବନିଯାଏ
ମୋ ମାଆର କୋଳ,
ସ୍ୱପ୍ନ ଆଉ
ଆଶାଙ୍କାଙ୍କ
ନିତ୍ୟ ଝଠାଘର ।
ବଞ୍ଚିବାର
ରାହା ଦାନେ
ମଣିଷକୁ
କରେ ଅଗ୍ରସର ।
ମୁଁ ବେକୁବ୍
ଚାହିଁ ରହେ
କିଯାଁ ମୋ ଛାଇକୁ ।
ମୋ ଠିକଣା
ଝୁଡ଼ି ଖୋଜେ
ବେଳ ଅବେଳକୁ ।
ମୁହିଁ ପରା
ମାଟିର ମଣିଷ
ମାଟିଗଢ଼ା
ପିଣ୍ଡ ମୋର
ଲୋଡ଼େ ଖାଲି
ଭୂମିର ନିଃଶ୍ୱାସ ।
ନିୟତ ମୁଁ
ଖୋଜୁଥାଏ
ସ୍ନେହ ଆଉ
ଶ୍ରଦ୍ଧାର ସଂସାର ।

ମମତାର
ବଗିଚାରେ
ଯଦିଚ
କରିବ ମୋତେ
କରିପାର
ଫୁଲ ଗଛଟିଏ
ଫୁଟୁଥିବି
ମୁହିଁ ନିରନ୍ତର ।



## (୩୧)

ହିମ ଗିରି ଶିଖ
ଚଢ଼ିବାରେ
କିମ୍ବା ଏବେ
ମଣେ ମୁଁ ବିମୁଖ ।
ପାରୁନି ତ ଜାଣି
ଶୂନ୍ୟତାର
ଓଜନ ବି
କଳି ହୁଏ ନାହିଁ
ବହିଯାଏ
ମୋ ଆଖିରୁ ପାଣି ।
ଲୁଚିବି ମୁଁ
କେଉଁ ସରୋବରେ
ସମୟର
ହଂସ ନାଦ
ଆଗରେ ପଛରେ ।
ନିତି ଶୁଭେ
ଅଜବ କୁହାଟ
ଉଠ ଆରେ ଉଠ ।
ସ୍ନାୟୁରେ ମୋ
ସନ୍ୟାସୀର ହସ
ନୈରାମଣି
ତନୁତଟେ
ଗହ ଗହ ବାସ ।

ବିଚତ୍ର ଏ
ଅନୁଭବ
ବିଚିତ୍ର ଦର୍ଶନ ।

ଏ ପାଖେ
ପୃଥିବୀ ରାଣ
ସେ ପାଖେତ
ଆକାଶର ଗାନ ।
ଶୁଣିବି ମୁଁ
ଅବା କେଉଁ ଡାକ
ନିରକ୍ଷ ଜନକୁ ରଖ
ହେ ପଙ୍କଜ ମୁଖ ।'

ହିମାଦ୍ରିରେ
ସ୍ୱର୍ଣ୍ଣାଭ ଗୋଧୂଳି
ଫୁଲଙ୍କ ଇସରା କ'ଣ
କେବେ ହୁଏ ଭୁଲି ?

ପୃଥ୍ୱୀ ଏବଂ ପୃଥ୍ୱୀ
ମା' ଆଖିର
ଯେତେ ନୀଳଜ୍ୟୋତି ।

ସବୁ ଏବେ
ପାଲଟଇ
ସାବ୍‌ଜା ଅନ୍ଧକାର;
କିଏ କେଣେ ଅଛ
ଆସି ରକ୍ଷାକର

ଆଦିଗନ୍ତ
ପରିବ୍ୟାପ୍ତ
ବ୍ୟାସ ସରୋବର
ମୋ ଆଖିରେ
ପ୍ରଶ୍ନବାଚୀ
ଅନନ୍ତ କାଳର ।

ବାରମ୍ବାର
ପଚାରେ ମୁଁ
କାହିଁ ଦୁର୍ଯ୍ୟୋଧନ ?

ଚତୁର୍ଦ୍ଦିଗେ
କାହାର ଏ
ଭୀମ ରଡ଼ି
ଗଗନ ପବନ ?

ପୃଥ୍ବୀର ?
ନା
ନିପୀଡ଼ିତ
ମଣିଷର ?

ଭାଇ କିନ୍ତୁ
କହୁଥା'ନ୍ତି
କାହାଣୀ ସେ
ଅନ୍ୟ ଇଲାକାର

ଭୂମିପୁତ୍ର
ଦେବ ପୁତ୍ର
ବନିବାର
ଯେତେ ଉପଚାର ।

ଭାବୁଥାଏଁ
କାହିଁ ସେ ବୈକୁଣ୍ଠ ?
ଚେତନାର
ନିତ୍ୟ ଭୂମି
ସାଧନାର ପୀଠ ।

ମିଳେନା ଉତ୍ତର
ପ୍ରଶ୍ନ ପରେ ପ୍ରଶ୍ନ
ଭାଇ ମୋର
ସଦା ନିରୁତ୍ତର ।

ଖାଲି ଆନମନା;
ସଶରୀରେ
ସ୍ୱର୍ଗବାସ
ଦୈବତ କଳ୍ପନା ।

ହେ ମୋର
ହୃଦୟ
ହୁଅ ଦୃଢ଼ମନା;
ରାସ୍ତା ମୋଡ଼ଣିରେ
ଆଖି ମୋର ଆଉ
ଲୋତକ ଗଡ଼ାନା ।



(୩୨)

ଲହୁ ଆଉ ଲୁହ
ଉଭୟର
ଖୋଜିଲି ମୁଁ
ଯେବେ ପରିଚୟ ।

ଲୁହରେ ତ
ଦେଖୁଥିଲି
ମଣିଷର ମନ ।

ଲହୁରେ ବି
ଲେଖାଥିଲା
ଜୀବନର ଗାନ ।

ସବୁ ଏବେ
ମନେପଡ଼େ
ମୁହଁ ଅଂଧାରରେ ।

ଲହୁ ଆଉ
ଲୁହଙ୍କର
ମେଲଣ ଭୂମିରେ ।

ଲହୁ କେବେ
ପାଲଟଇ
ଜୀବନର ଭାଷ୍ୟ ।

ଲୁହରେ ତ
ଭେଦିହୁଏ
ଜଗତ ରହସ୍ୟ

ସତତ ମୁଁ
ଦେଖିଥିଲି
ଲହୁ କୂଳେ
ଲୁହର ଉଜାଣି ।
ଲହୁର
ସାମନ୍ତ ବି' ତ
ଭେଟିଥାଏ
ଲୁହର ବିପଣି ।
ଏତ
ଦୁନିଆଁର ରୀତି
ଲହୁ ଆଉ
ଲୁହଙ୍କର
ଅଖଣ୍ଡ ପୀରତି ।
କହି ଭୀମ
ହେଜୁଥିଲେ
କୁରୁକ୍ଷେତ୍ର
ଅନ୍ତିମ ପର୍ବକୁ
ଦ୍ରୌପଦୀର
ପଞ୍ଚପୁତ୍ର
ହତ ଘଟଣାକୁ ।
ସବୁଠି ତ
ଲହୁ ଆଉ
ଲୁହ ସମାବେଶ
କଟାମୁଣ୍ଡ
ପାଞ୍ଚ ଧରି
ଅଶ୍ୱତ୍ଥମା
ଯେବେ ହସହସ ।
କୁରୁପତି କଣ୍ଠ ପୁଣି
ଉଠେ ରଣରଣି

'ଏକି କଲ
ଅପଦାର୍ଥ
ହୃଦୟ ମୋ
ପକାଇଲ ହାଣି ।'

''ଏ ଲୁହରେ
କିପରି ମୁଁ
କରିବି ତର୍ପଣ

ମୋ ଆଖିର
ପଞ୍ଚପୁତ୍ର
କଲ ହତ
ମୁଁ ଯେ ଏକ
ନିରିଅଂଶୀ
ବିଡ଼ମ୍ବିତ ଜନ ।''

ଏବେ ମୁଁ ବୁଝୁଛି
ବୈରପାଠେ
ଅବୈରର
ଦୃପ୍ତ ଆକର୍ଷଣ ।
ଅଧରେ ମୋ
ସାମବେଦୀ ଗାନ ।
କହି କାନ୍ଦେ
ଗାନ୍ଧାରୀ ନନ୍ଦନ ।

ସେ କ୍ରନ୍ଦନ ଭାଷା
ହୃତ ଯଶ
ମଣିଷର ଆଶା
ଏବେ ବି ତ ଖେଳିବୁଲେ
ଆକାଶ ବୁକୁରେ
ବୃକୋଦର
ଚାହେଁ କୁତୂହଳେ
ହିମଗିରି ଚୂଳେ ।

(୩୩)

ହେବ ଆତ୍ମ!
ହିମଗିରି
ମଣିଷର ଚେତନାକୁ
ପାରିଛକି ଧରି ।
ସବୁଠି ତ ହସକାନ୍ଦ
ଚିତ୍ରିତ ଫରଦ
ସବୁଠି ତ
ଭଙ୍ଗାଗଢ଼ା
ହୃଦର ସଂବାଦ ।
ଅବିରତ ଭଣେ
ମୁଁ କାକୁସ୍ଥ ଜନ
ସମୟର
ବତ୍ରିଶ ପାବଚ୍ଛେ
କିଏ ଡାକେ
ମୋତେ ଅନୁକ୍ଷଣ ।
ସଂପଦେ ବିପଦେ
ଅବା ଆତ୍ମବିସ୍ମୃତିରେ
ନିଜକୁ ପରଖି ନିଏ
ସଂଜବେଳଟାରେ ।
ମୁହିଁ ସତ୍ୟ
ମୁହିଁ ଶିବ
ମୁହିଁ ତ ସୁନ୍ଦର;
ମଧୁକ୍ଷରା ପୃଥିବୀକୁ
ଚାହେଁ ବାରମ୍ବାର ।

ଏଇଠି ତ
ପାଇଥିଲି
ପ୍ରଥମ ଆଲୋକ ।
ଏଇଠି ତ
ଦେଖିଥିଲି
ମୋ ମାଆର ମୁଖ !

ଜ୍ଞାତି ପରିଜନ
ପରିଚିତ
ଗାଆଁ ବିଲବଣ

ସବୁଠି ତ
ଆପଣାର ଭାବ
ସବୁଠି ତ
ବଞ୍ଚିବାର
ନିତ୍ୟ ମହୋତ୍ସବ !

କେମନ୍ତେ
ଛାଡ଼ିବି ଆହା
ଏ ପୃଥିବୀ କୋଠି
ମଣିଷପଣିଆଟାକୁ
କେମନ୍ତେ ବା
କରିଦେବି ମାଟି ।

ଭାଇ ମୋର
କିଆଁ ମୋତେ
କରୁଛ ଉଚ୍ଚାଟ

'ଉତ୍ତିଷ୍ଠ
ଜାଗ୍ରତ
ପ୍ରାପ୍ତବାନ,
ନିବୋଧିତ
ମନ୍ତ୍ରଟାକୁ
କିଆଁ ଭଲା
କରୁଅଛ ପାଠ ।

ମୁଁ ନିର୍ବାକ
ସ୍ତନନ୍ଧୟ
ଏଇ ଧରିତ୍ରୀର
ସତ୍ୟସନ୍ଧ
ତୁମେ ପରା
ଭୁଲିଯାଅ
ଏ ମାଟିର ସ୍ୱର ।
କହି ଭୀମ
ଗମୁଥିଲେ
ଭାଇଙ୍କ ପଛରେ
ହିମାଦ୍ରିରେ
ଝଡ଼ଉଠେ
ଝଡ଼ ପୁଣି
ଭୂମିରୁ ଭୂମାରେ ।
ହତବାକ୍
ସମୟର
ନାଭି ମଣ୍ଡଳରେ
ଭୀମସେନ
ଚାହିଁ ରହେ
ଆକାଶ ଖଣ୍ଡରେ ।



(୩୪)

ବ୍ୟୋମ ପରେ ବ୍ୟୋମ
କାହିଁ ଅବା
ସେ ସରଗ ଧାମ ।
ସବୁଠି ତ
ତୁଷାର ପାହାଡ଼
ସବୁଠି ତ
ଚେତନାର ଶିଳାଲେଖ
ଅବା ଜଉଗଡ଼ ।
ପଢି ହୁଏ ନାହିଁ
କାହିଁ ପ୍ରୀତି ?
କାହିଁ ମୁକ୍ତି ?
ସବୁ ପରା
ବାରବାଙ୍କ ନଈ ।
ସମୟର
ଏତେ ପରିଭାଷା
ବିଲକୁଲ
ବୁଝିହୁଏ ନାହିଁ ।
ଦେବତାର
ପାଠସ୍ଥଳି
ଯଦି ଏଇ ଗିରି
ଚଉବର୍ଗ
ଲାଭ ପାଇଁ
କିମ୍ବା ମୁହିଁ
ହୁଏ ପଥଚାରୀ ।

କହି ଭୀମ
ମାରୁଥାଏ
ପାହାଡ଼ୀ ନିଃଶ୍ୱାସ
ହେମାଳ ପବନେ ଖେଳେ
ମନ୍ଦାକ୍ରାନ୍ତା ହସ ।

ପାଦ ତା'ର
ସହସା ଅଟକେ
ଅଚାନକ
ଡାକିଉଠେ
'ରୁହ ଭାଇ ରୁହ,
ଥମିଯାଅ ଟିକେ ।

ବାମ ପାଦ
ହୁଏ ଟଳମଳ
ସେବା ଦାସ
ଭାଇଟିରେ
ବାରେ ତୋଳି ଧର !

ମୁଣ୍ଡ ମୋ
ଚକର୍ ମାରେ
ପାରୁ ନାଇଁ ଚାଲି ।
ଅସମର୍ଥ
ସହୋଦରେ
ନିଅ ଭାଇ ନିଅ
ହାତଗୋଟେ ଧରି !

ଆର୍ତ୍ତିଜନ
ପ୍ରୀତିମାଗେ
ଧରା ଚାହେଁ ହସ
ତୃଷ୍ଣାର ତର୍ପଣ ଶେଷେ
ସତେ ଅବା
ନୂଆ କରି ଜନ୍ମ ନିଏ
ମୋ ଭାରତ ବର୍ଷ ।

କହି ଭୀମ
ଝୁଣ୍ଟି ପଡ଼େ
ତୁଷାର ଖଣ୍ଡରେ
ଚିକ୍‌ଚିକ୍
ଖରା ନାଚେ
ଗିରି ମଥାଣିରେ ।

ଯୁଧିଷ୍ଠିର
ଚାଲିଥିଲେ
ଆଗକୁ ଆଗକୁ

ଚରୈବେତି
ଚରୈବେତି
ନିଶା ଅବା
ଘାରିଥିଲା
ସମଗ୍ର ସତ୍ତାକୁ ।



(୩୬)

ବରଫରେ
ଫୁଲ ଫୁଟେ
ଅଗଣିତ ଫୁଲ
ଯେଉଁ ଆଡ଼େ
ଚାହିଁ ଦେଲେ
ଇଟିକିଲି ମିଟିକିଲି
ଖେଳର ସଂସାର ।

ଗୁରୁଣ୍ଡି ଗୁରୁଣ୍ଡି
ମୁଁ ବି କେବେ
ବସିଥିଲି
ପାହାଡ଼ ମୁଣ୍ଡରେ ।

ସହସା
ପାହାଡ଼ ଗୋଟା
ଶତଖଣ୍ଡ
ହୋଇଗଲା
ପାଦ ପହାରରେ ।

ସେଇଦିନୁ
ପାହାଡ଼କୁ
କରେ ନମସ୍କାର;
ପାହାଡ଼ର
ଧୂଳି ମାଟି
ଏବେ ହୁଏ
ମୋ ପୁଣ୍ୟ ମନ୍ଦିର ।

କହି ଭୀମ
ଚାହିଁରହେ
ଗିରି ଶିଖରକୁ
ଲାଗେ ବଡ଼ ଉଦାସିଆ
ଭାବି ଦେଲେ
ମଣିଷର
ଏକେଲା ପଣକୁ ।

ଧର୍ମ ଯଦି
ବାନ୍ଧି ରଖେ
ସମଗ୍ର ଦୁନିଆଁ
ଧର୍ମ ବି ତ
ହୃଦୟର
ଅଣଲିଭା ନିଆଁ
ଆଉ
ଭାବ ବିନୋଦିଆ ।

ମୁଁ ଚାହେନି
ସ୍ୱର୍ଗବାସ
ସୁଦୂର ପ୍ରବାସ;
ଏ ମାଟିରେ
ଦେଖୁଥିବି
ମଣିଷର ମୁହଁ
ଆଉ ହେଜୁଥିବି
ମୋ ମାଆର ହସ ।

କହି ଭୀମ
ହୁଏ ଛଟପଟ
ଯୁଧିଷ୍ଠିର
ମାରୁଥିଲେ
ଆନନ୍ଦେ କୁହାଟ ।

"ଦେଇ ଦେଖ
ଫିଟିଲାଣି
ଯାଉଁଳି କବାଟ;
ଦିଶିଲାଣି
ଦିବ୍ୟ ଭୂମି
ଏବଂ ହରିହାଟ ।"

ଏଇତ ଜୀବନ
ଲୋଡ଼ା ତାର
ଧରାବାସ
ଲୋଡ଼େ ମୁହିଁ
ସ୍ୱର୍ଗ ଭୂମି
ଚିରନ୍ତନୀ ରସ
ଦେଖ ତୁରେ
ଶ୍ୟାମାୟିତ
ହସର ଆକାଶ ।



(୩୬)

ହେ ଧରିତ୍ରି
ଦିଅ ମୋତେ
ଗୋଟାଏ ସକାଳ ।
ତୋ ଅଙ୍ଗନେ
ଏହା ମୋର,
ଶେଷ ଅଭିସାର ।
ଦେହତ
ପୁରୁଣା ହେଲା
ଜୀର୍ଣ୍ଣ ବସ୍ତ୍ର ପରି
ମାଟି ପିଣ୍ଡ
ପଡ଼ି ରହେ
ମାଟିକୁ ଆଦରି ।
ଗଛପତ୍ର
ଝଡ଼ିପଡ଼େ
ହଳଦିଆ ହେଲେ;
ସମୟତ
ତାଳଗଛ ଛାଇ
କେମିତି ମାରିବି ହାଇ
ଶେଷ ପ୍ରହରରେ ।
ପିଣ୍ଡ ଛାଡ଼ି
ପ୍ରାଣ ଏବେ
ମିଶିଯାଏ
ପାହାଡ଼ୀ ହାୱାରେ ।

ହୁଏତ
ଭେଟିବି ମୁହିଁ
ପୁଣି ଏକ
ନୂତନ ଦୁନିଆଁ;
ଏ ଧରାରେ
ହୋଇପାରେ
ହୁଏତ ମୁଁ
ପୁନଶ୍ଚ କୁଣିଆ ।
ନିଜକୁ ଜାଣିବା ପାଇଁ
ପୃଥ୍ୱୀକୁ ଚିହ୍ନିବା ପାଇଁ
ସ୍ନେହ ସରାଗର କେତେ
ଚାଲେ ଦିଆନିଆ ।
ତଥାପି ତ
ମୋ ମନରୁ
ଶମୁ ନାହିଁ
ଅତୃପ୍ତିର ନିଆଁ ।
ଚାହିଁଲେ
ଭଳିକି ଭଳି
ଦିଶିଯାଏ
ଶ୍ରଦ୍ଧାର ଉଆସ ।
ମୋ ମନରେ
ଲାଗେ କିଯାଁ
କାଲୁଆ ବତାସ !!
ଅଟ୍ଟହାସର
ନା
ଅନୁକମ୍ପାର ?
ବୁଝେ ନାହିଁ ବୁଝି;
ମଣିଷର
ବୃକୋଦରୀ ମନ

ସତେ କ'ଣ
ଚିରଦିନ
ଦିଏ ଆଖି ବୁଜି ??
ଆକାଶରେ
ଉଠେ ଯଦି
କ୍ରନ୍ଦନର ରୋଳ
ସମଧର୍ମା
ମଣିଷର
ଚିତ୍ତର ବୈକଲ୍ୟ
ଏବଂ
ଆଖି ଛଳଛଳ ।

ଥୋକେ କିନ୍ତୁ
କହୁଥାନ୍ତି
କିମ୍ବା କରଗୋଳ;
'ଏଇ ଦେଖ
ଆସିଲାଣି
ଫେରିବାର ବେଳ ।'
ବୃକୋଦର
ବଞ୍ଚିରହେ
ଆମରି ଭିତରେ;
ଖୁଲି ଖୁଲି ହସେ
ଏବଂ ବୁଲୁଥାଏ
ଅତନୁ-ରାଗରେ ।

କହୁଥାଏ
'ନୁହେଁ ମୃତ୍ୟୁ
ଚାହେଁ ମୁଁ ଜୀବନ
ଦିଅ ମୋତେ
ବଞ୍ଚିବାର
ମନ୍ତ୍ର ଉଚ୍ଚାରଣ ।'

ହେ ବାଟୋଇ ଭାଇ
ମୃତ୍ୟୁବିତ
ଜୀବନର
ଏକ ନୂଆଖାଇ ।

ଦେଖୁଛ ତ
ଦେହେ ସାରା
ବଉଦିଆ ପାଟ
ଛାଡ଼ିଦିଅ ବାଟ
କର ନାହିଁ
ଆହ୍ନିକ ସଂକଟ ।



(୩୭)

ଚାହିଁଲେ ଆକାଶ
ପୃଥ୍ୱୀ ମୁହୁଁ
ଲିଭିଯାଏ ହସ ।
ପଡ଼ିରହେ
ନୀଳ ଛାଇ
ଜହ୍ନ ଓ ତାରାର
ସମୟ
ବାହୁନି କାନ୍ଦେ
ହାୟ ବୃକୋଦର !
ଘର ଓ ବାହାର
ଶୁଭୁଥାଏ
କ୍ରନ୍ଦନର ରୋଳ
ଏଇ ପୃଥିବୀର ।
ଚାରିଆଡ଼େ
ନୀଳସ୍ମୃତି
ମଣିଷ ଜାତିର
ଭୀମେଇ ମନଟି ମୋର
ଲୁହ ଛଳଛଳ ।
ଆଖିରେ ତ
ଭରିଯାଏ
ଯୁଦ୍ଧେଷ୍ଟିରୀ ନିଶା
ଅଧରେ
ଫୁଟଇ ଯଦି
ସହଦେବୀ ଭାଷା ।
ବାତୁଳ ମୁଁ
ପଚ୍ଛୁଥାଏଁ

କାହିଁ ବୃକୋଦର ??
କାହିଁ ସେହି
ମହାମନ
କୋଟି ମଣିଷର ।

ସବୁଠି ତ
ଦିଆନିଆ
ତୁଚ୍ଛା ଅନୁକଂପା ।
ସ୍ନେହ ଆଉ
ସୋହାଗର
କେବଳ ଖୋଳପା ।

ସବୁ ପ୍ରଦର୍ଶନ
ବିଜ୍ଞାପନୀ ମନ
ଆହା ସାହା
କହିବାର
ବରାଦୀ ବାଚନ ।

ଶୁଣି ଏଇ ଗୀତ
ଭୀମ ଯେତେ
ବନିଯିବେ ଶିଳା
ଅବା କେବେ
ହୋଇଯିବେ
ଅଚିରାତ୍
ସ୍ତୂପୀଭୂତ
ମାଟିର ପିଣ୍ଡୁଳା ।

ପାରୁଚ ତ ଜାଣି ?
ତଥାପି ଏ
ଧରା ପିଣ୍ଡେ
ଉଠେ ରଣଭଣି
ବୃକୋଦରୀ ବାଣୀ
ମଣିଷ ଜାତିର
ଏତ
ନିଟୋଳ କାହାଣୀ ।



କବିତା ମନ୍ତ୍ର ହେବା ଉଚିତ୍, ନ୍ୟୂନପକ୍ଷେ ଆଶିଷ ଉପଦେଶ ପରି ଅମୃତମୟ ହେବା ଦରକାର ବୋଲି ବିବେଚନା କରନ୍ତି କବି : ପ୍ରଫେସର ଶରତ ଚନ୍ଦ୍ର ପ୍ରଧାନ ।

କବିତାରେ କବିଟିଏ ଅଳ୍ପରେ ଢେର କଥା କହିବସେ ।

ମଣିଷର ସାମଗ୍ରିକ ରୂପରେ ରେଖାଚିତ୍ର ଆଙ୍କି ତହିଁରେ ସମଗ୍ର ମାନବିକତାର ସଂଧାନ ଦେଇପାରିଲେ କବିତାର ଧର୍ମ ସାର୍ଥକ ହୁଏ ବୋଲି ବିଶ୍ୱାସ ରଖନ୍ତି ପ୍ରଫେସର ପ୍ରଧାନ ।

ଆପଣାର ସର୍ଜନା ଓ ସମୀକ୍ଷା ସହିତ ଶବ୍ଦକୋଷ ପ୍ରଣୟନରେ ନିଜକୁ ବ୍ୟାପୃତ କରି ରଖିଛନ୍ତି ପ୍ରଫେସର ପ୍ରଧାନ ଅବସର ନେବା ପରେ ।

'ବୃକୋଦର' କବିଙ୍କର ନବମ କବିତା ଗ୍ରନ୍ଥ ।

-ପ୍ରକାଶକ

ISBN-81-89881-00-0